ସୃଜନିକାର ଅନ୍ୟ ସବୁ କାମ ଭଳି ଏହି ବହିଟିର ପ୍ରସ୍ତୁତିରେ ଅନେକ ସମୟ ଲାଗିଛି ଓ ଅନେକ ଲୋକ ଭାଗ ନେଇଛନ୍ତି। ରବିବାର କ୍ଲବ୍ ପିଲାଙ୍କଠାରୁ ଆରମ୍ଭ କରି ବଡ଼ମାନଙ୍କ ଯାଏଁ ସମସ୍ତେ ଏହି ଖେଳନା ତିଆରି କାମରେ ବିଭିନ୍ନ ବାଟରେ ଯୋଡ଼ିହୋଇଛନ୍ତି। ଏଗୁଡ଼ିକୁ ପ୍ରଥମେ ତିଆରି କରିବାରେ ଏବଂ ପିଲାମାନଙ୍କୁ ଶିଖାଇବାରେ ବିଶେଷ ଭାବରେ ସମ୍ପୃକ୍ତ ଥିଲେ **ମିନତି ଭୋଳ, ସ୍ୱର୍ଣ୍ଣଲତା ରାଉତ, ଅନୀତା ନାୟକ, ଅଜିତ କୁମାର ପ୍ରଧାନ, ପ୍ରଦୋଷ କୁମାର ହୋତା, ଲଡ଼ୁକିଶୋର ପ୍ରଧାନ, ଶିବପ୍ରସାଦ ପାତ୍ର, ପ୍ରଭାତି ସିଂହ, ଉଷାରାଣୀ ଦାଶ, ସନ୍ତୋଷ ରାଉତରାୟ, ଜୟଶ୍ରୀ ବିଶ୍ୱାଳ, ସସ୍ମିତା ସିଂହ, ଅପର୍ଣ୍ଣା ରାଉତ, ଗୀତାଞ୍ଜଳୀ ସାହୁ।**

ସେମାନଙ୍କୁ ଦିଗ୍‌ଦର୍ଶନ ଦେବାରେ ଏବଂ ତାଙ୍କ କାମକୁ ଲିଖିତ ରୂପକୁ ଆଣିବାରେ ମୂଖ୍ୟ ଭୂମିକା ନେଇଛନ୍ତି
**ସମ୍ପଦ ମହାପାତ୍ର, ଜୀବନ କୁମାର ପଣ୍ଡା ଓ ଅଲେଖ ପ୍ରସାଦ ନାୟକ।**

ବହିଟିର ସମ୍ପାଦନା ଓ ଚୂଡ଼ାନ୍ତ ଉପସ୍ଥାପନା କରିଛନ୍ତି
**ପୁଷ୍ପଶ୍ରୀ ପଟ୍ଟନାୟକ।**

# ହାତ ତିଆରି ଖେଳନା

# Handmade Toys

*ଉପସ୍ଥାପନା ଓ ପ୍ରକାଶନ*
**ସୃଜନିକା**
ଜାଗମରା, ଡାକ: ଖଣ୍ଡଗିରି
ଭୁବନେଶ୍ୱର ୭୫୧ ୦୩୦

Presentation & Publication
Srujanika
Jagamara, Po. Khandagiri
Bhubaneswar 751 030



*ମୁଦ୍ରଣ*
**ଶୋଭନ**
୧୦୬, ଆଚାର୍ଯ୍ୟବିହାର
ଭୁବନେଶ୍ୱର

Printing
*Shovan*
106, Acharyabihar
Bhubaneswar

*ପ୍ରଥମ ପ୍ରକାଶନ:* ଫେବୃଆରୀ ୨୦୦୧

First Edition: February 2001

ମୂଲ୍ୟ: **ପନ୍ଦର ଟଙ୍କା**

**Price: Fifteen Rupees**

ଅରବିନ୍ଦ ଗୁପ୍ତାଙ୍କର ମୂଳ ହିନ୍ଦୀ/ଇଂରାଜୀ ସଙ୍କଳନ ଏବଂ ଅବିନାଶ ଦେଶପାଣ୍ଡେଙ୍କର ଚିତ୍ର ଉପରେ ଆଧାରିତ।

Based on Hindi/English originals of Arvind Gupta with Avinash Deshpande's illustrations.

# ଆମ କଥା

ପିଲା ମାତ୍ରକେ ଖୁଦୁବୁଦିଆ। ସେ ସବୁବେଳେ କିଛି ନା କିଛି କରିବାରେ ବ୍ୟସ୍ତ ଥାଏ। ଯାହା ଯେଉଁଠୁ ପାଏ ତାକୁ ଆଣି ତା'ର ଖେଳନା ପେଡ଼ିରେ ପୂରାଇଥାଏ। ସେଥିରେ ଥାଏ ପୁରୁଣା ପ୍ଲାଷ୍ଟିକ ବୋତାମଠାରୁ ଆରମ୍ଭ କରି ଖାଲି ଦିଆସିଲି ଖୋଳ, ଖାଲି କଲମ ନଳୀ, ରିଫିଲ, ସୂତା ରିଲ୍, ରବର ଟୁକୁଡ଼ା, ଲୁହାକଣ୍ଟା, ଫିଉଜ ବଲ୍‌ବ୍ ଯାଏଁ କେତେ ଯେ କ'ଣ ଜିନିଷ। ଏସବୁକୁ ନେଇ ସେ କିଛି ଜିନିଷ ତିଆରି କରିବାରେ ଲାଗିଥାଏ। ଆମକୁ ଏସବୁ ଅଳିଆ ଭଳି ଲାଗୁଥିଲେ ମଧ୍ୟ ପିଲା ପାଇଁ ତାହା ଅମୂଲ୍ୟ ସମ୍ପଦ। ତାହାର ସୃଜନଶୀଳ ଚିନ୍ତାର ବାସ୍ତବ ପରିପ୍ରକାଶ ପାଇଁ ଏଗୁଡ଼ିକ ଅତି ଜରୁରୀ କଞ୍ଚାମାଲ। ସେହି ଖୁଦୁବୁଦିଆ ହାତ ଏବଂ ସୃଜନଶୀଳ ମନ ଦୁଇଟିକୁ ଏକାଠି କରି ଆଉ କିଛି ବାଟ ଆଗେଇ ନେବା ପାଇଁ ଏହି ବହିଟିରେ କିଛି ନୂଆ ପ୍ରକାରର ଖୋରାକ ଦିଆଯାଇଛି।

ଆଜିକାଲି ବଜାରରେ ଅନେକ ପ୍ରକାରର ଖେଳନା ମିଳୁଛି। କିନ୍ତୁ ସେଗୁଡ଼ିକ ଏପରି ତିଆରି ହୋଇଛି ଯେ ତା' ଭିତରେ କ'ଣ ଅଛି ବା ସେଗୁଡ଼ିକ କିପରି କାମ କରୁଛି ତାହା ଜାଣିବା ସମ୍ଭବ ନୁହେଁ। ପୁଣି ସେଗୁଡ଼ିକର ମୂଲ୍ୟ ଏତେ ବେଶୀ ଯେ ପିଲାକୁ ମୂଳରୁ ତାଗିଦା କରିଦିଆଯାଇଥାଏ ତାକୁ ସାଇତି ରଖିବା ପାଇଁ। ନହେଲେ ଭାଙ୍ଗିଯିବ। ତେଣୁ ପିଲାର ଖେଳନା ପ୍ରତି ଆଗ୍ରହ ମରିଯାଏ। ସେ ଚାହେଁ ତା'ର ଖେଳନା ଏପରି ହୋଇଥିବ ଯାହାକୁ ସେ ଖୋଲିପାରିବ, ଭାଙ୍ଗିପାରିବ, ଯୋଡ଼ିପାରିବ ଏବଂ ନିଜେ ସଜାଡ଼ି ବି ପାରିବ। ଏପରି ବଡ଼ କମ୍ପାନୀ ତିଆରି ଖେଳନା ବଜାରରେ ମିଳିବାର ବହୁତ ଆଗରୁ ପିଲାମାନେ ନିଜ ଚାରିପାଖର ଜିନିଷ ସବୁକୁ ନେଇ ଖେଳନା ତିଆରି କରୁଥିଲେ। ନଡ଼ିଆପତ୍ରରେ ଫେଁକାଳୀ ବା ଦିଆସିଲି ଖୋଳର ଟେଲିଫୋନ ଭଳି କେତେ ଜିନିଷ ପିଲାମାନେ ନିଜ ହାତରେ ତିଆରି କରିବାର ଓ ଅନ୍ୟଙ୍କୁ ଶିଖାଇବାର ମଜା ପାଉଥିଲେ।

କିନ୍ତୁ ଏବେ ହାତରେ କିଛି ତିଆରି କରିବା ପାଇଁ ପିଲା ପାଖରେ ସୁବିଧା ବା ପ୍ରେରଣା ନାହିଁ, ସେଦିଗରେ ବୟସ୍କଙ୍କର ସହାୟତା ବା ସହାନୁଭୂତି ମଧ୍ୟ ନାହିଁ। ତେଣୁ ନିଜେ ହାତରେ ସେ କିଛି ତିଆରି କରିପାରୁନାହିଁ। ବଡ଼ ହେଲା ବେଳକୁ ତା'ର ଏହି ଦୁର୍ବଳତା

ରହିଯାଉଛି। ତେଣୁ ଅତି ଛୋଟ ଜିନିଷଟିଏ ଖରାପ ହୋଇଗଲେ ବି ସେ ଅନ୍ୟ ଉପରେ ନିର୍ଭର କରୁଛି। ନିଜେ ସଜାଡ଼ିବା ପାଇଁ ଚେଷ୍ଟା ମଧ୍ୟ କରୁନାହିଁ।

ହାତରେ ତିଆରି କରିବା ଶିକ୍ଷାର, ବିଶେଷକରି ବିଜ୍ଞାନଶିକ୍ଷାର, ଗୋଟିଏ ବଡ଼ ଅଂଶ। ଅନୁଭୂତିମୂଳକ ଶିକ୍ଷାର ଏହା ପ୍ରଥମ ପାହାଚ। ପ୍ରତ୍ୟକ୍ଷ ଅନୁଭୂତିରୁ ଆସେ ଶିକ୍ଷାର ଉଦ୍ଦୀପନା ଏବଂ ପ୍ରୟୋଗ ଓ ମୌଳିକ ଯୋଜନା ପାଇଁ ଆତ୍ମବିଶ୍ୱାସ। ଖେଳରୁ ଆରମ୍ଭ କରିଥିଲେ ସିଦ୍ଧାନ୍ତ ବୁଝିବା ବେଳକୁ ଆଉ ଡର ରହେନାହିଁ। ଏହି ଖେଳନାଗୁଡ଼ିକରେ ବିଜ୍ଞାନର ଅନେକ ସିଦ୍ଧାନ୍ତ ରହିଛି, କିନ୍ତୁ ଏଠାରେ ତା'ର ଆଲୋଚନା କରାଯାଇନାହିଁ। କାରଣ ପିଲା ପ୍ରଥମେ ଖେଳୁ। ସମୟ ଓ ଆଗ୍ରହ ଆସିଲେ ବିଜ୍ଞାନର ଚର୍ଚ୍ଚା ଆପେ ଆଗେଇବ।

ନିଜ ଚାରିପାଖରେ ଥିବା ସାଧାରଣ ଜିନିଷକୁ ନେଇ କିପରି କିଛି ଖେଳନା ତିଆରି କରାଯାଇପାରିବ ତା'ର ବର୍ଣ୍ଣନା ଏହି ବହିରେ ରହିଛି। ଆମପାଇଁ ଏସବୁର ପରିଚିତି ଆସିଛି **ଅରବିନ୍ଦ ଗୁପ୍ତାଙ୍କର** *ଲିଟିଲ୍ ସାଇନ୍ସ୍, ଟେ ଜଏ, ଟେ ବ୍ୟାଗ୍, ଖେଳି ଖେଳି ଶିଖିବା, ଲିଟିଲ୍ ଟଏଜ୍ ବହିରୁ।* ମୂଳ ଚିତ୍ରଗୁଡ଼ିକର ସ୍ରଷ୍ଟା **ଅବିନାଶ ଦେଶପାଣ୍ଡେଙ୍କ** ପାଖରେ *ମଧ୍ୟ ଆମେ କୃତଜ୍ଞ। ସୃଜନିକାର ଅନ୍ୟ ସବୁ କାମ ଭଳି ଏହି ବହିଟିର ପ୍ରସ୍ତୁତିରେ* ଅନେକ ସମୟ ଲାଗିଛି ଓ ଅନେକ ଲୋକ ଭାଗ ନେଇଛନ୍ତି। ରବିବାର କ୍ଲବ୍ ପିଲାଙ୍କଠାରୁ ଆରମ୍ଭ କରି ବଡ଼ମାନଙ୍କ ଯାଏଁ ସମସ୍ତେ ଏହି ଖେଳନା ତିଆରି କାମରେ ବିଭିନ୍ନ ବାଟରେ ଯୋଡ଼ିହୋଇଛନ୍ତି। ସୃଜନିକାର ଗୋଟିଏ ଖରାଦିନିଆ ଶିବିରରେ ପିଲାମାନେ ଏହିଭଳି ଅନେକ ଖେଳନା ତିଆରି କରିଥିଲେ ଓ ଖେଳରେ ଲଗାଇଥିଲେ। ସେଭିତରୁ ଯେଉଁଗୁଡ଼ିକ ତାଙ୍କୁ ବେଶୀ ଭଲ ଲାଗିଥିଲା ସେଗୁଡ଼ିକୁ ସେମାନେ ଏହି ବହିପାଇଁ ବାଛିଥିଲେ। ଏଥିରୁ ଅନେକଗୁଡ଼ିଏ ବିଜ୍ଞାନ ତରଙ୍ଗରେ ଆଗରୁ ବାହାରିଥିଲା।

ଆମ ସମସ୍ତଙ୍କର ଆଶା ଯେ ଏହି ବହିଟିକୁ କେହି ଖାଲି 'ପଢ଼ିବେ' ନାହିଁ, ବରଂ ଏହାକୁ ଧରି କାମକରିବେ, ଖେଳନାଗୁଡ଼ିକ ତିଆରି କରିବେ ଏବଂ ନିଜର କାମରେ ସେଗୁଡ଼ିକୁ ବ୍ୟବହାର କରିବା ପାଇଁ ବାଟ ଖୋଜିବେ। ମୋଟାମୋଟି ଭାବରେ ଅନ୍ୟମାନଙ୍କ ସହିତ ସମ୍ପର୍କ ଯୋଡ଼ିବା ପାଇଁ ଖେଳନା ତିଆରି କାମକୁ ଗୋଟିଏ ମାଧ୍ୟମ କରିବାର ଚେଷ୍ଟା କରିବେ। ଆହୁରି ମଧ୍ୟ ଆଶା ଯେ ନିଜର ହାତତିଆରି ଖେଳନାର ଅନୁଭୂତି ବିଷୟରେ ଆମକୁ ନିଶ୍ଚୟ ଜଣାଇବେ। ବହିଟି ବିଷୟରେ ମତାମତ ଦେବା ସହିତ ନିଜେ ଜାଣିଥିବା ସହଜ ଓ ସରଳ ଖେଳନା ବିଷୟରେ ଲେଖି ଜଣାଇବାକୁ ମଧ୍ୟ ଅନୁରୋଧ।

**ଫେବୃଆରୀ ୨୦୦୧** **ସୃଜନିକା ପରିବାର**

# ସୂଚୀପତ୍ର

## ବ୍ୟବହାର ପାଇଁ ସୂଚନା . . .

*ହାତତିଆରି ଖେଳନା* ବହିଟି ପିଲାଠାରୁ ବଡ଼ଯାଏଁ ସବୁ ବୟସର ଲୋକଙ୍କର କାମରେ ଆସିପାରିବା ଭଳି ଏକ ବହି। ହାତକୁ କାମରେ ଲଗାଇ ନିଜେ ବିଶେଷ କିଛି କରିବା ପାଇଁ ଏହା ଏକ ସାଧନ ସାମଗ୍ରୀ।

- ପିଲାମାନେ ଏଥିରୁ ସିଧାସଳଖ ମଜା ପାଇପାରିବେ।
- ଶିକ୍ଷକ/ଶିକ୍ଷୟିତ୍ରୀମାନେ ପିଲାଙ୍କ ସହିତ କାମକରିବା ପାଇଁ ଏହାକୁ ଏକ ମାଧ୍ୟମ ଭାବରେ ବ୍ୟବହାର କରିପାରିବେ।
- ବାପା ମା' ବା ବଡ଼ ଭାଇଭଉଣୀମାନେ ପିଲାମାନଙ୍କ ସହିତ ମିଶି ଏହିଭଳି କିଛି ଖେଳନା ତିଆରିକଲେ ପରିବାର ଭିତରେ ସମ୍ପର୍କ ଆହୁରି ନିବିଡ଼ ହୋଇପାରିବ।
- ଶିକ୍ଷା ଓ ବିଜ୍ଞାନ କର୍ମୀମାନେ ଅଜଣା ଜାଗାରେ ପରିଚିତି ଆଣିବା ପାଇଁ ଏଥିରୁ ନିଜର କାମ ଆରମ୍ଭ କରିପାରିବେ। ଏକ ଅଭିଯାନର ରୂପ ଦେଇ ନିଜେ କରି ଶିଖିବା ଆନ୍ଦୋଳନରେ ଏହାକୁ ଏକ ହତିଆର ଭାବରେ କାମରେ ଲଗାଇପାରିବେ।

କେବଳ ପଢ଼ିଦେଲେ ଏହି ବହିଟିର ଅସଲ ମଜା ମିଳିବନାହିଁ। ଖେଳନାଗୁଡ଼ିକୁ ନିଜେ ତିଆରି କରିବାକୁ ହେବ ଓ ଅନ୍ୟମାନଙ୍କୁ ଦେଖାଇବାକୁ/ଖେଳାଇବାକୁ/କରାଇବାକୁ ହେବ।

*ଆହୁରି କେତେ ନୂଆ ଖେଳନା ପାଇଁ ଦେଖନ୍ତୁ –*

୧. ଲିଟିଲ ସାଇନ୍ସ (ହିନ୍ଦୀ/ଇଂରାଜୀ), ଅରବିନ୍ଦ ଗୁପ୍ତା, 'ଏକଲବ୍ୟ', ଭୋପାଳ।

୨. ଟଏ ବ୍ୟାଗ (ହିନ୍ଦୀ/ଇଂରାଜୀ), ଅରବିନ୍ଦ ଗୁପ୍ତା, 'ଏକଲବ୍ୟ', ଭୋପାଳ।

୩. ମାଚ୍‌ଷ୍ଟିକ୍ ମେକାନୋ (ଇଂରାଜୀ), ଅରବିନ୍ଦ ଗୁପ୍ତା, 'ଏକଲବ୍ୟ', ଭୋପାଳ।

୪. ଖେଲ୍ ଖିଲୋନେ (ହିନ୍ଦୀ), 'ଏକଲବ୍ୟ', ଭୋପାଳ।

୫. ଟଏ ଜଏ (ଇଂରାଜୀ), ଅରବିନ୍ଦ ଗୁପ୍ତା, ବିଜ୍ଞାନ ପ୍ରସାର, ନୂଆଦିଲ୍ଲୀ।

୬. ଲିଟିଲ ଟଏଜ୍ (ଇଂରାଜୀ), ଅରବିନ୍ଦ ଗୁପ୍ତା, ନାସନାଲ ବୁକ୍ ଟ୍ରଷ୍ଟ, ନୂଆଦିଲ୍ଲୀ।

୭. ଜଏ ଅଫ୍ ମେକିଙ୍ଗ ଇଣ୍ଡିଆନ ଟଏଜ୍ (ଇଂରାଜୀ), ସୁଦର୍ଶନ ଖାନ୍ନା, ନାସନାଲ ବୁକ୍ ଟ୍ରଷ୍ଟ, ନୂଆଦିଲ୍ଲୀ।

(ଏହି ବହିଗୁଡ଼ିକ ସୃଜନିକାଠାରୁ ମିଳିପାରିବ)

# ସୋଡ଼ା ଷ୍ଟ୍ରୁ ପେଁକାଳୀ

ବଜାରରେ ଅନେକ ପ୍ରକାରର ପେଁକାଳୀ ମିଳେ । ସେଗୁଡ଼ିକ ଭାଙ୍ଗିଗଲେ ଦୁଃଖ ଲାଗେ । କିନ୍ତୁ ଆମେ ଯଦି ନିଜ ହାତରେ ପେଁକାଳୀ ତିଆରି କରିପାରିବା, ଭାଙ୍ଗିଗଲେ ସାଙ୍ଗେ ସାଙ୍ଗେ ନିଜେ ଆଉ ଗୋଟିଏ ତିଆରି କରିଦେବା ।

*କ'ଣ ଦରକାର:*

- ସୋଡ଼ା ଷ୍ଟ୍ରୁ, କଇଁଚି ।



*କିପରି କରିବ:*

- ସୋଡ଼ା ଷ୍ଟ୍ରୁ'ର ଗୋଟିଏ ମୁଣ୍ଡକୁ ହାତରେ ଧରି ଚାପିଦିଅ ଯେପରି ତାହା ଚେପଟା ହୋଇଯିବ ।



- ଚେପ୍‌ଟା ଅଂଶକୁ ଗୋଜିଆ (Λ) କରି କାଟିଦିଅ ।
- କଟା ପଟରେ ଷ୍ଟ୍ରୁର ଗୋଜିଆ ହୋଇ ଦୁଇଟି ପରସ୍ତ ଥିବ । ଏହାକୁ ପାଟିରେ ପୂରାଇ ଫୁଙ୍କିଲେ ପେଁକାଳୀ ପରି ବାଜିବ ।



- ଷ୍ଟ୍ରୁର ଅନ୍ୟମୁଣ୍ଡରୁ କଇଁଚି ସାହାଯ୍ୟରେ ଅଳ୍ପ ଅଳ୍ପ କରି କାଟ ଯେପରି ଷ୍ଟ୍ରୁର ଲମ୍ବା କମି କମି ଯିବ ଓ ପ୍ରତିଥର କାଟିବା ପରେ ଫୁଙ୍କ । ଷ୍ଟ୍ରୁଟି ଯେତିକି ଯେତିକି ଛୋଟ ହୋଇଯିବ ପେଁକାଳୀର ସ୍ୱର ବଦଳି ବଦଳି ଯିବ । ଆସ୍ତେ ଆସ୍ତେ ଏମିତି କାଟି କାଟି ଷ୍ଟ୍ରୁଟିକୁ କେତେ ଛୋଟ କରିବା ଯାଏଁ ପେଁକାଳୀଟି ବାଜୁଛି ତାହା ଲକ୍ଷକର ।



# ସୋଡ଼ାଠିପି ହ୍ୱିସିଲ୍

ପିଲାଦିନେ ହ୍ୱିସିଲ୍ ଫୁଙ୍କିବାକୁ ଭାରି ମଜା ଲାଗେ । ହ୍ୱିସିଲରୁ ବାହାରୁଥିବା ସୁନ୍ଦର ସ୍ୱର ମନକୁ ଟାଣିନିଏ ।

*କ'ଣ ଦରକାର:*

- ସୋଡ଼ାଠିପି, ବେଲୁନ୍ ଟୁକୁରା ଖଣ୍ଡେ ।



*କିପରି କରିବ:*

- ସୋଡ଼ାଠିପିଟିକୁ ଉପର ମୁହାଁ କରି ରଖ ଯେପରି ତା'ର ଦାନ୍ତ ଦାନ୍ତ ପଟଟି ଉପରକୁ ରହିବ ।
- ଟୁକୁରା ବେଲୁନ୍‌ଟିକୁ ଟାଣି ସେହି ଠିପି ଉପରେ ଲଗାଇଦିଅ, ଯେପରି ବେଲୁନ୍‌ଟି ସୋଡ଼ାଠିପିରେ ଭଲ କରି ଲାଗିଯିବ ଓ ସହଜରେ ଖସିଯିବନାହିଁ ।





- ବେଲୁନ୍‌ଲଗା ଠିପିକୁ ଦୁଇ ଓଠ ଫାଙ୍କରେ ଲଗାଇରଖି ଜୋରରେ ଫୁଙ୍କ । କ'ଣ ହେଉଛି?
- ବାଜାଟିକୁ ଓଠ ପାଖରେ ବିଭିନ୍ନ କୋଣରେ ରଖ ଓ ଫୁଙ୍କିକରି ଦେଖ, କ'ଣ ହେଉଛି ।



# ଟିକ୍ ଟିକ୍ ବାଜା

**ସୋଡ଼ାଠିପିରୁ ଟିକ୍ ଟିକ୍ ଶବ୍ଦ ବାହାରି ପାରୁଥିବା ବାଜାଟିଏ ତିଆରିକରି ବଜାଇଲେ ସତରେ ବହୁତ ମଜା ଲାଗେ। ଏମିତି ବାଜାଟିଏ ତିଆରି କରି ବଜାଇବା।**

*କ'ଣ ଦରକାର:*

- ସୋଡ଼ାଠିପି, ବୋତାମ, ରବରବ୍ୟାଣ୍ଡ, ପ୍ରାୟ ୩୦ ସେ.ମି. ଲମ୍ବର ମୋଟା ସୂତା।



*କିପରି କରିବ:*

- ରବରବ୍ୟାଣ୍ଡଟିକୁ ଛିଣ୍ଡାଇ ବୋତାମର ଗୋଟିଏ କଣାରେ ପୂରାଇଦିଅ ଓ ଗଣ୍ଠି ପକାଇଦିଅ ଯେପରି ରବରବ୍ୟାଣ୍ଡଟି ଆଉ ଖସିଯିବନାହିଁ।
- ବୋତାମର ଆଉ ଗୋଟିଏ କଣାରେ ସୂତା ପୂରାଇ ଗଣ୍ଠି ପକାଅ ଯେପରି ତାହା ଖସିଯିବ ନାହିଁ।
- ସୂତାରେ ପ୍ରାୟ ଦୁଇ ସେଣ୍ଟିମିଟର ଲେଖାଁ ଛାଡ଼ି ଗୋଟିଏ ଲେଖାଏଁ ଗଣ୍ଠି ପକାଅ। ରବରବ୍ୟାଣ୍ଡଟିକୁ ଗୋଟିଏ ସୋଡ଼ାଠିପିରେ ଚଢ଼ାଇଦିଅ।
- ଏଥର ବାଜାଟି ତିଆରି ହୋଇଗଲା। ଠିପିଟିକୁ ବାଁ ହାତରେ ଧରି ସୂତାଟିକୁ ଡାହାଣ ହାତର ବୁଢ଼ା ଆଙ୍ଗୁଠି ଓ ବିଶି ଆଙ୍ଗୁଠି ଭିତରେ ରଖି ହାଲୁକା ଭାବରେ ଖସାଇନିଅ। ସୂତାର ପ୍ରତି ଗଣ୍ଠି ପାଖରେ ରବରବ୍ୟାଣ୍ଡଟି ଟାଣି ହୋଇଯିବ ଓ ଟିକ୍ ଟିକ୍ ହୋଇ ବାଜିବ।



# କାଗଜ ପେଁକାଳୀ

**ପେଁକାଳୀ ବଜାଇବାକୁ ତ ଭାରି ମଜାଲାଗେ । ଏଇଟି ଯଦି କାଗଜରେ ତିଆରି କରାଯାଏ ତେବେ ସୁବିଧା । କାରଣ ଯେତେବେଳେ ଚାହିଁଲେ କରିହେବ ।**

*କ'ଣ ଦରକାର:*

- ୧୦ ସେ.ମି. x ୧୦ ସେ.ମି. ବର୍ଗାକାର କାଗଜ, କଇଁଚି, ଅଠା,



*କିପରି କରିବ:*

- ୧୦ ସେ.ମି.ର ଗୋଟିଏ ବର୍ଗାକାର କାଗଜ ନେଇ ଚିତ୍ର ଭଳି ଗାର ପକାଅ ଓ ଗାର ଉପରେ କାଟିଦିଅ ।
- ଏବେ କାଗଜର ଗୋଟିଏ ପଟକୁ ଛୋଟିଆ ପଟିଖଣ୍ଡେ ରହିଥିବ ।



- କାଗଜଟିକୁ ଗୋଟିଏ ପଟୁ ଗୁଡ଼ାଇଆଣ । ତା'ର *ଶେଷମୁଣ୍ଡରେ ଅଠା ଦେଇ ଯୋଡ଼ିଦିଅ ।*
- ନଳୀର ଗୋଟିଏ ପଟରେ କାଗଜ ପଟି ଖଣ୍ଡକ ରହିଥିବ । କାଗଜ ପଟିଟି ବାହାରକୁ ରଖି ନଳୀରେ ଫୁଙ୍କ । ଏହା ପେଁକାଳୀ ଭଳି ବାଜିବ ।



- ଏବେ ଏହାକୁ ଗୋଟିଏ ପୁରୁଣା ସୂତାରିଲ୍ ଭିତରେ ପୂରାଇ ନଳୀଟିକୁ ଭିତର ବାହାରକର । କ'ଣ ହେଉଛି ?



# ବେଲୁନ ପେଁକାଳୀ

ବେଲୁନ ଖଣ୍ଡେ ପାଇଗଲେ ତାକୁ ନେଇ କେତେରକମର ଖେଳ କରାଯାଏ । ଫାଟିଗଲାପରେ ମଧ୍ୟ ତାକୁ ନେଇ ପେଁକାଳୀ କରିହେବ ।



**କ'ଣ ଦରକାର:**

❁ ଫିଲ୍ମ ଡବା, ଖାଲି ସ୍କେଚ କଲମ, ଖାଲି ରିଫିଲ, ଫଟା ବେଲୁନ, ଛୁରୀ



**କିପରି କରିବ:**

❁ ଫିଲ୍ମ ଡବାର ଖୋଳର ମଝିରୁ ପ୍ରାୟ ଦେଢ଼ ସେ.ମି. ଗୋଲେଇର କଣାଟିଏ କାଟ ।



❁ ଡବାର ତଳପଟେ ଛୋଟ କଣାଟିଏ କର । କଇଁଚି ପୂରାଇ ତାକୁ ଧୀରେ ଧୀରେ ବଡ଼ କର ଯେପରି ସେଥିରେ ଖାଲି ସ୍କେଚ କଲମଟି ଠିକରେ ପଶିବ ।



❁ ସ୍କେଚ କଲମର ଉପର ମୁନିଆ ଅଂଶ କାଟିଦେଇ ଉପରୁ ୧ ସେ.ମି ଓ ୩ ସେ.ମି ଛାଡି ଦୁଇଟି କଣାକର । ଡବାର ତଳ କଣାରେ ଏହି ସ୍କେଚ କଲମକୁ ପୂରାଇଦିଅ ।



❁ ଫିଲ୍ମ ଡବାର ଉପରୁ ୧ ସେ.ମି. ତଳକୁ ଛୋଟିଆ କଣାଟିଏ କରି ସେଥିରେ ଖାଲି ରିଫିଲ ଖଣ୍ଡେ ପୂରାଇଦିଅ ।



* ଫଟା ବେଲୁନ ଖଣ୍ଡେ ନେଇ ଡବାର ଖୋଲା ମୁହଁରେ ଟାଣିକରି ଲଗାଇଦିଅ। ଡବାର ଖୋଳ ବନ୍ଦ କରିଦିଅ। ତାହେଲେ ବେଲୁନଟି ଖସି ନଯାଇ ଭିଡ଼ି ହୋଇ ରହିବ।
* ଏବେ ସ୍କେଚ କଲମଟିକୁ ଧୀରେ ଧୀରେ ଉପରକୁ ଉଠାଅ ଓ ଏକା ସମୟରେ ରିଫିଲରେ ଫୁଙ୍କ। ଗୋଟିଏ ଜାଗାରେ ପେଁକାଳୀଟି ବାଜିବ। ସେହି ଜାଗାରେ ସ୍କେଚ କଲମଟି ରଖ।
* ସ୍କେଚ କଲମର କଣାଦୁଇଟିରେ ଆଙ୍ଗୁଠି ରଖି ଖୋଲାବନ୍ଦ କଲେ ତାହା ବଂଶୀ ଭଳି ସ୍ୱର କରି ବାଜିବ।

---

# ଜରି ପେଁକାଳୀ

**ଚକଲେଟଟିଏ ଖାଇବା ଯେମିତି ମଜା ତା'ର ଜରିରେ କଣ୍ଢେଇ ତିଆରି କରିବା ସେହିପରି ମଜା। ଏବେ ସେହି ଜରିରେ ପେଁକାଳୀଟିଏ କରିବା।**

*କ'ଣ ଦରକାର:*

* ଚକଲେଟ ଜରି



*କିପରି କରିବ:*

* ଚକଲେଟ ଜରିଟିଏ ନେଇ ତାକୁ ଭିଡ଼ି ସିଧା କରିଦିଅ।
* ସିଧା ହୋଇଥିବା ଜରିଟିକୁ ଦୁଇ ହାତର ବୁଢ଼ା ଏବଂ ବିଶି ଆଙ୍ଗୁଠିରେ ଟାଣିକରି ଧର।
* ଜରିଟିକୁ ମୁହଁ ପାଖରେ ରଖି ଜୋରରେ ଫୁଙ୍କ। ଖୁବ୍ ଜୋରରେ ପେଁକାଳୀଟି ବାଜିଉଠିବ।



# ଫୋଟକା

କାଗଜ ବା ବେଲୁନରୁ ତ ଅନେକ ପ୍ରକାରର ବାଜା ତିଆରି କରିହେବ। ଏବେ ଗୋଟିଏ ମୋଟା ପଟା ନେଇ ଫୋଟକାଟିଏ ତିଆରି କରିବା।

*କ'ଣ ଦରକାର:*



- ୮ ସେ.ମି. ବର୍ଗର ଦୁଇଟି ମୋଟା ପଟା, (ପତଳା ପ୍ଲାଇଉଡ୍ ମଧ୍ୟ ହେବ), ଛୁରୀ, ରବରବ୍ୟାଣ୍ଡ

*କିପରି କରିବ:*

- ୮ ସେ.ମି. ବର୍ଗର ଦୁଇଟି ମୋଟା କାଗଜପଟି ନିଅ। ତା'ର ଦୁଇ ଧାରରେ ଦୁଇଟି ଘାଇ କାଟ। ଘାଇ ଦୁଇଟି ଯେପରି V ଭଳି ହେବ।



- ଦେଖିବ ଯେପରି ପଟା ଦୁଇଟିରେ ଘାଇଗୁଡ଼ିକ ଏକା ଜାଗାରେ ହୋଇଥିବ।
- ଏବେ ପଟି ଦୁଇଟିକୁ ଏକାଠି ରଖି ସେ ଘାଇରେ ଗୋଟିଏ ରବରବ୍ୟାଣ୍ଡ ଲଗାଇଦିଅ। ରବରବ୍ୟାଣ୍ଡଟି ଟାଣି ହୋଇ ରହିବା ଦରକାର।







- ପଟି ଦୁଇଟିକୁ ଓଲଟାଇ ଦେଇ ମିଶାଇଦିଅ।
- ଏପରି କରିବା ଯୋଗୁଁ ରବରବ୍ୟାଣ୍ଡଟି ଟାଣି ହୋଇ ରହିଥିବ।
- ଏବେ ପଟି ଦୁଇଟିକୁ ଉପରକୁ ଛାଡ଼ିଦିଅ। ତାହା ପିଟି ହୋଇ ଜୋରରେ ଶବ୍ଦ କରିବ।





# ସୂତାଟଣା ଗାଡ଼ି

**ଦୋକାନରେ କେତେ ପ୍ରକାରର ରଙ୍ଗବେରଙ୍ଗ ପ୍ଲାଷ୍ଟିକ ଗାଡ଼ି ମିଳିଥାଏ । ଏସବୁର ଦାମ୍ ବି ବହୁତ ବେଶୀ । ଏବେ ଆମେ ଖୁବ୍ କମ୍ ଖର୍ଚ୍ଚରେ ଗୋଟିଏ ଗାଡ଼ି ନିଜ ହାତରେ ତିଆରି କରିବା ।**

*କ'ଣ ଦରକାର:*

- ଗୋଟିଏ ଖାଲି ଦିଆସିଲି ଖୋଳ, ଚାରୋଟି ପ୍ଲାଷ୍ଟିକ ବୋତାମ, ଗୋଟିଏ ରବରବ୍ୟାଣ୍ଡ, ଦୁଇଟି ଛୋଟ ରିଫିଲ୍ ଟୁକୁଡ଼ା, ଦୁଇଟି ଆଲପିନ୍, ମହମବତୀ



*କିପରି କରିବ*

- ଦିଆସିଲି ଖୋଳର ମୋଟେଇ ଉପରେ ରବରବ୍ୟାଣ୍ଡକୁ ଭଲଭାବେ ଗୁଡ଼ାଇଦିଅ ।
- ଗୋଟିଏ ଆଲପିନ୍‌କୁ ଗରମ କରି ଗୋଟିଏ ପ୍ଲାଷ୍ଟିକ ବୋତାମର ଠିକ୍ ମଝିରେ ଫୋଡ଼ିଦିଅ । ଫୋଡ଼ିବା ବେଳେ ଯେପରି ଆଲପିନ୍‌ଟି ବଙ୍କା ହୋଇନଯାଏ । ଆଲପିନ୍‌ଟି ଗରମ ଥିବା ଅବସ୍ଥାରେ ହିଁ ବୋତାମଟିକୁ ତଳକୁ ଚାପିଦିଅ ଯେପରି ତାହା ଆଲପିନ୍‌ର ଗୋଟିଏ ମୁଣ୍ଡରେ ଯାଇ ରହିବ ।
- ଏବେ ପିନ୍‌ରେ ଗୋଟିଏ ଛୋଟ ରିଫିଲ ଖଣ୍ଡ ପୂରାଇଦିଅ । ପିନ୍‌ର ଆରମୁଣ୍ଡକୁ ପୁଣି ଥରେ ଗରମ କରି ଆଉ ଗୋଟିଏ ବୋତାମ ଲଗାଇଦିଅ । ଏବେ ତୁମ ଗାଡ଼ିର ଗୋଟିଏ ଯୋଡ଼ା ଚକ ତିଆରି ହୋଇଗଲା । ଏଥିରେ ଆଲପିନ୍‌ଟି ଅଖର କାମ ଦେବ । ତା' ଭିତରେ

ଚକଟି ବେଶ୍ ଆରାମରେ ବୁଲିପାରିବ। ସେହିପରି ଭାବରେ ଆଉ ଗୋଟିଏ ଯୋଡ଼ା ଚକ ତିଆରିକର।



* ଏବେ ଚକ ଦୁଇ ଯୋଡ଼ାକୁ ଦିଆସିଲି ଗାଡ଼ିରେ ଖଞ୍ଜିବା କଥା। ଦିଆସିଲି ଖୋଳର ବାରୁଦପଟରେ ରବରବ୍ୟାଣ୍ଡଟି ଗୁଡ଼ାଇଦିଅ। ରବରବ୍ୟାଣ୍ଡ ଭିତରେ ଚକ ଦୁଇଟିକୁ ଏପରି ପୂରାଅ ଯେପରି ରବରବ୍ୟାଣ୍ଡଟି ଚକ ଦୁଇଟିର ରିଫିଲ୍ ଖଣ୍ଡକୁ ଭିଡ଼ି ଧରିବ।



* ଚକ ଦୁଇ ଯୋଡ଼ା ଲାଗିସାରିବା ପରେ ଆମ ଟଣା ଗାଡ଼ି ତିଆରି ହୋଇଗଲା। ଦିଆସିଲି ଖୋଳର ସାମ୍ନାରେ ଯାଇଥିବା ରବରବ୍ୟାଣ୍ଡରେ ସରୁ ସୂତାଟିଏ ବାନ୍ଧି ଟାଣ।

---

# ବଲ୍‌ବର ଯବକାଚ

**ଲେନ୍‌ସ ବା ଯବକାଚରେ ଛୋଟ ଜିନିଷକୁ ଦେଖିଲେ ତାହା ବଡ଼ ଦେଖାଯାଏ। ପୁରୁଣା ଇଲେକ୍‌ଟ୍ରିକ୍ ବଲ୍‌ବ୍ ଭାଙ୍ଗି ଆମେ ନିଜେ ଯବକାଚ ତିଆରି କରିପାରିବା।**

*କ'ଣ ଦରକାର:*

* ପୁରୁଣା ଇଲେକ୍‌ଟ୍ରିକ୍ ବଲ୍‌ବ୍, ମୁନିଆ ବଡ଼ ଲୁହା କଣ୍ଟା



*କିପରି କରିବ:*

* ବଲ୍‌ବ୍‌ର ପଛପଟେ ଥିବା ପିତୁକୁ ଗୋଟିଏ ମୁନିଆ ଲୁହାକଣ୍ଟା ଧରି ଧୀରେ ଧୀରେ ଠୁକେଇଲେ ତାହା ଭାଙ୍ଗି ବାହାରି ଆସିବ। ତା'ପରେ କଣ୍ଟାରେ ଧୀରେ କରି ଭିତରକୁ ଠେଲିଦେଲେ ଭିତରେ ଥିବା ଫିଲାମେଣ୍ଟଟି ଖସିଯିବ। ସେ ସବୁକୁ କାଢ଼ିଦେଇ ଭିତର ଭଲକରି ସଫା କରିଦିଅ। ବଲ୍‌ବ୍ ଭିତରେ ସଫା ପାଣି ପୂରାଇ ବଲ୍‌ବ୍‌ଟିକୁ ହାତରେ ଧରି ଯେକୌଣସି ଜିନିଷକୁ ଲକ୍ଷକର। କିପରି ଦେଖାଯାଉଛି?

# ପାଲଲଗା ଗାଡ଼ି

ପବନରେ ଠେଲି ହୋଇ ଚାଲିବା ପାଇଁ ଡଙ୍ଗାରେ ପାଲ ଲାଗିଥାଏ । ଗୋଟିଏ ଗାଡ଼ିରେ ପାଲଟିଏ ଲଗାଇଦେଲେ ତାହା ମଧ୍ୟ ମନକୁମନ ଚାଲିବ । ସେହିଭଳି ଗୋଟିଏ ପାଲଲଗା ଗାଡ଼ି ତିଆରି କରିବା ।

### କ'ଣ ଦରକାର:

- ଫଟୋ ଫିଲ୍ମ ଡବା, ପୋଷ୍ଟକାର୍ଡ଼, ମହମବତୀ, ଖାଲି ରିଫିଲ, ୫ ସେ.ମି ଲମ୍ବର ଦୁଇଟି ଛୁଞ୍ଚି, ବଡ଼ ପ୍ଲାଷ୍ଟିକ ବୋତାମ ଚାରୋଟି

### କିପରି କରିବ

- ଫିଲ୍ମ ଡବା ଉପରେ ୩.୫ x ୨ ସେ.ମି. ମାପର ଗୋଟିଏ ଆୟତାକାର ଚିହ୍ନ ଦେଇ ତା'ର ଚାରିକୋଣରେ କଣାକର । ଏହି କଣାରେ ଚକର ଅଖ ପଶିବ ।
- ଛୁଞ୍ଚିର ଗୋଟିଏ ମୁଣ୍ଡ ଗରମ କରି ବୋତାମର ମଝିରେ ପୂରାଅ ଯେପରି ବୋତାମଟି ଛୁଞ୍ଚିରେ ଲାଗିରହିବ ।
- ଛୁଞ୍ଚିଟିକୁ ଫିଲ୍ମ ଡବାର କଣାରେ ପୂରାଇ ତାକୁ ଗରମ କରି ଆଉ ମୁଣ୍ଡରେ ବୋତାମ ଲଗାଇଦିଅ । ଗାଡ଼ିର ଗୋଟିଏ ଚକ ହୋଇଗଲା । ସେହିଭଳି ଆଉ ଚକଟି ତିଆରିକର ।
- ଡବାର ଉପର ପଟେ ଠିକ ମଝିରେ କଣାଟିଏ କର ଯେପରି ସେଥିରେ ରିଫିଲ ପଶିପାରିବ ।



❁ ପୋଷ୍ଟକାର୍ଡ଼ଟିଏ ମଝିରୁ ଭାଙ୍ଗି ଆଗ ପୃଷ୍ଠାର ଚିତ୍ର ଭଳି କାଟିଦିଅ। କଟାହୋଇଥିବା ପୋଷ୍ଟକାର୍ଡ଼ଟିରେ କଣା କରି ସେଥିରେ ରିଫିଲ ପୂରାଇଦିଅ।

❁ ରିଫିଲଟିକୁ ଗାଡ଼ିର ମଝିରେ ହୋଇଥିବା କଣାରେ ଲଗାଇଦିଅ। ତୁମର ଗାଡ଼ିଟି ହୋଇଗଲା। ପବନ ଜାଗାରେ ରଖିଲେ ଗାଡ଼ିଟି ପବନରେ ଆଗକୁ ଚାଲିବ।



# ବେଲୁନ ଜେଟ୍

**ଗୋଟିଏ ବେଲୁନକୁ ଫୁଙ୍କି ତାକୁ ଛାଡ଼ିଦେଲେ ସେ ଖୁବ୍ ଜୋରରେ ଉଠିଯିବ। ସେଇ ବେଲୁନକୁ ଗୋଟିଏ ନିର୍ଦ୍ଦିଷ୍ଟ ଗୁଳାରେ ପକାଇଲେ ତାହା ଜେଟ୍ ଇଞ୍ଜିନ ପରି ଗୋଟିଏ ଦିଗରେ ଆଗେଇଯିବ।**

*କ'ଣ ଦରକାର:*

❁ ବେଲୁନ, ଖାଲି ରିଫିଲ, ମୋଟା ସୂତା; ସେଲୋଟେପ୍

*କିପରି କରିବ*

❁ ଖଣ୍ଡେ ମୋଟା ସୂତା ନେଇ ଗୋଟିଏ ଖାଲି ରିଫିଲ ଭିତରେ ପୂରାଇଦିଅ। ସୂତାଟିର ଦୁଇମୁଣ୍ଡକୁ ବାନ୍ଧି ଅଳ୍ପ ଉଚ୍ଚରେ ଝୁଲାଇଦିଅ। ଗୋଟିଏ ବେଲୁନକୁ ଫୁଙ୍କି ତା'ର ମୁହଁକୁ ଚିପିଧର। ସେଲୋଟେପ୍ ବା ଅଠାକାଗଜ ମାରି ବେଲୁନଟିକୁ ରିଫିଲ ସହ ଯୋଡ଼ିଦିଅ। ଏହି ଯୋଡ଼ିବା କାମ ପାଇଁ ତୁମର ଜଣେ ସାଥି ଦରକାର ହେବ। ବେଲୁନର ମୁହଁରୁ ହାତ କାଢ଼ି ନେଇ ଦେଖ ତାହା କିପରି ସୂତା ଧାରରେ ଜୋରରେ ଚାଲିଯାଉଛି।



# ଚାବିଦିଆ ଗାଡ଼ି

**ବଜାରରେ କେତେ ପ୍ରକାରର ଗାଡ଼ି ମିଳେ । ଚାବି ମୋଡ଼ି ଛାଡ଼ିଦେଲେ ତାହା ମନକୁମନ ଚାଲେ । ସେହିଭଳି ଗୋଟିଏ ଚାବିଦିଆ ଗାଡ଼ି ଆମେ ତିଆରି କରିବା ।**

*କ'ଣ ଦରକାର:*

- ଦିଆସିଲି ଖୋଳ, ବଡ଼ ପ୍ଲାଷ୍ଟିକ ବୋତାମ ୪ଟି, ଛୋଟ ଛୁଞ୍ଚ ୨ଟି, ସୂତା, ଖଡ଼ିକା, ଅଠା, ମହମବତୀ



*କିପରି କରିବ:*

- ଦୁଇଟିଯାକ ଛୁଞ୍ଚିର ଗୋଟିଏ ମୁଣ୍ଡ ଗରମ କରି ଗୋଟିଏ ଲେଖାଏଁ ପ୍ଲାଷ୍ଟିକ ବୋତାମ ଭିତରେ ପୂରାଇ ଦୁଇଟି ଏକଚକିଆ ଅଖ ତିଆରିକର ।



- ଦିଆସିଲି ଖୋଳର ପେଟିକୁ ଟିକିଏ ବାହାରକର । ଖାଲିଥିବା ବାହାର ଖୋଳର ତଳୁ ପ୍ରାୟ ଦୁଇ ସେ.ମି. ଉପରେ ଏପଟରୁ ସେପଟ ଯାଏଁ ଗୋଟିଏ କଣା କର । ଦିଆସିଲିର ଆର ମୁଣ୍ଡରେ ସେହିପରି କଣା କରି ଦୁଇଟିଯାକ ଏକଚକିଆ ଅଖ ପୂରାଇଦିଅ । ଦେଖିବ ଯେପରି ପ୍ରଥମ ଅଖକୁ ଦିଆସିଲିର ଭିତର ଖୋଳ ଛୁଉଁନଥିବ ।





- ଛୁଞ୍ଚି ଦୁଇଟିକୁ ଗରମ କରି ଆର ବୋତାମ ଦୁଇଟି ପୂରାଇ ଚକ ତିଆରି କର । ପ୍ରଥମ ଅଖର ଠିକ ମଝିରେ ସୂତାକୁ ବାନ୍ଧି ଗଣ୍ଠି ଜାଗାରେ ଅଠା ଦେଇଦିଅ ଯେପରି ସୂତାଟି ଖସିଯିବନାହିଁ । ଦିଆସିଲିର ଭିତର ଖୋଳର ପଛପଟେ ଛୋଟ ଖଡ଼ିକା ଖଣ୍ଡେ ଅଠା ବା ସେଲୋଟେପ୍ ଦେଇ ଯୋଡ଼ିଦିଅ । ଏଥର ସୂତାଟିକୁ ଖଡ଼ିକାର ଅଗରେ ବାନ୍ଧିଦିଅ । ତୁମର ଗାଡ଼ିଟି ହୋଇଗଲା । ଖଡ଼ିକା ଲାଗିଥିବା ପଟରୁ ଦିଆସିଲିଟିକୁ କିଛିଦୂର ଆଗକୁ ଗଡ଼ାଇଦିଅ । ଦେଖିବ ଗାଡ଼ିଟି ଆପେ ଆପେ ପଛକୁ ଫେରିଆସିବ ।





# ତରକା ପ୍ରଜାପତି

**ପ୍ରଜାପତି ସବୁବେଳେ ତରତର ହେଉଥାଏ। ସତେ ଯେମିତି କୁଆଡ଼େ କାମରେ ଯାଉଛି। ଏଭଳି ତରକା ପ୍ରଜାପତିକୁ ଧରିବା ପାଇଁ ଗୋଟିଏ ମଜା ଖେଳନା ତିଆରି କରିବା।**

*କ'ଣ ଦରକାର:*

- ଖାଲି ଦିଆସିଲି ଖୋଳ, ପୁରୁଣା ପୋଷ୍ଟକାର୍ଡ, ରଙ୍ଗ କରିବା ପାଇଁ ସ୍କେଚ କଲମ, କଇଁଚି



*କିପରି କରିବ:*

- ଦିଆସିଲିର ଦୁଇଗୁଣ ଲମ୍ବା ମାପି ଗୋଟିଏ ପୋଷ୍ଟକାର୍ଡରୁ ଖଣ୍ଡେ କାଟିଦିଅ। ପୋଷ୍ଟକାର୍ଡ ଉପରେ ଚିତ୍ର ଭଳି ତଳୁ କିଛି ଛାଡ଼ି ଗାର ପକାଅ।



- ଏଥର ଗାର ଉପରକୁ ଗୋଟିଏ ଚିତ୍ର କର। ଏଠାରେ ଝିଅଟିର ଅଣ୍ଟା ଓ ପ୍ରଜାପତିର ଦେହ ଗାରକୁ ଛୁଉଁଛି। ଝିଅଟି ହାତରେ ବେଣ୍ଟଲଗା ଜାଲଟିଏ ଧରିଛି।
- ଚିତ୍ରଟିକୁ କାଟି ପୋଷ୍ଟକାର୍ଡରୁ ଅଲଗା କର। ତଳ ପଟିଟି ଚିତ୍ର ସହ ଲାଗିଥିବା ଦରକାର। ପଟି ଉପରେ ଗାର ଉପରେ କାଗଜକୁ ଭଲକରି ଭାଙ୍ଗିଦିଅ।



- ପଟିର ଦୁଇମୁଣ୍ଡକୁ ଦିଆସିଲିର ଦୁଇମୁଣ୍ଡରେ ଅଠା ଦେଇ ଯୋଡ଼ିଦିଅ।
- ତୁମ ଖେଳନାଟି ତିଆରି ହୋଇଲା। ଦିଆସିଲି ଖୋଳଟିକୁ ହାତରେ ଧରି ଆଗପଛ କଲେ ଝିଅଟି ତରକା ପ୍ରଜାପତିକୁ ଜାଲରେ ଧରୁଥିବ, ପୁଣି ଛାଡୁଥିବ।



# ଉଡ଼ନ୍ତା ପ୍ରଜାପତି

ରଙ୍ଗୀନ ପ୍ରଜାପତିଟିଏ ବଗିଚାରେ ଉଡୁଥିବା ଦେଖିଲେ ଭାରି ଖୁସିଲାଗେ । ଆମେ ସେହିଭଳି ଗୋଟିଏ ପ୍ରଜାପତି କରି ଉଡ଼ାଇବା ।

*କ'ଣ ଦରକାର:*

- ପୁରୁଣା ଗ୍ରୀଟିଙ୍ଗସ୍ କାର୍ଡ଼ ବା ପୋଷ୍ଟକାର୍ଡ, ରବର ଟୁକୁଡ଼ା, ଖାଲି ରିଫିଲ, ସରୁ ତାର, ଡେନ୍‌ଡ୍ରାଇଟ୍ ଅଠା



*କିପରି କରିବ*

- କାର୍ଡକୁ ମଝିରୁ ଭାଙ୍ଗି ସେଥିରେ ପ୍ରଜାପତିଟିଏ ଆଙ୍କ ଓ କାଟିଦିଅ । - - - ଗାର ଉପରେ ଦୁଇଧାରକୁ ମଝିଆଡକୁ ଭାଙ୍ଗି ଭଲ କରି ଚାପିଦିଅ ଓ ଖୋଲିଦିଅ । • ଚିହ୍ନ ଉପରେ ପିନ୍ କଣ୍ଟା ଫୋଡ଼ି କଣା କର ।



- ୨୨ ସେ.ମି. ଲମ୍ବାର ସରୁ ତାର ନେଇ ତାକୁ ଚିତ୍ର ଭଳି ମୋଡ଼ି ଫାଶଟିଏ ତିଆରି କର । ୫ ସେ.ମି.ର ଆଉ ଖଣ୍ଡେ ତାର ମୋଡ଼ି ପ୍ରଜାପତିର ଶୁଣ୍ଢ କର ।



- ରବର ଟୁକୁଡ଼ାର ମଝିରେ ରିଫିଲଟି ପୂରାଅ । ରବର ଉପରେ ଡେନ୍‌ଡ୍ରାଇଟ ଅଠା ଦେଇ ପ୍ରଜାପତିର ତଳ ପଟେ ତାକୁ ଲଗାଇଦିଅ, ଯେପରି ରିଫିଲର ମୁଣ୍ଡିଟି ପ୍ରଜାପତିର ମଝିରେ ଥିବା କଣାରେ ଫୋଡ଼ିହୋଇ ରହିବ ।
- ତାରର ଫାଶରେ ରିଫିଲଟି ପୂରାଅ । ତାରର ଦୁଇ ମୁଣ୍ଡ ଡେଣାର କଣାରେ ପୂରାଇ ମୋଡ଼ିଦିଅ । ଫାଶର ତାରକୁ ଟିକିଏ ମୋଡ଼ିଦିଅ । ଏବେ ଫାଶଟିକୁ ତଳ ଉପର କଲେ ପ୍ରଜାପତିଟି ଡେଣା ହଲାଇ ଉଡ଼ିବ ।



# କାଠଚଢ଼ା ପ୍ରଜାପତି

ଘୂରି ବୁଲୁଥିବା ପ୍ରଜାପତିଟି ଆମ କଥା ମାନେନାହିଁ । ମନ ଇଚ୍ଛା ଘୂରିବୁଲେ । ଆମେ ହାତରେ ଏପରି ପ୍ରଜାପତିଟିଏ ତିଆରି କରିବା ଯିଏ ଆମ କଥା ମାନିବ ।



କ'ଣ ଦରକାର:

- ମୋଟା କାଗଜ, ଖାଲି ରିଫିଲ, ଆଇସକ୍ରିମ କାଠି, ସେଲୋଟେପ୍, କଇଁଚି, ସୂତା



କିପରି କରିବ

- ମୋଟା କାଗଜରେ ପ୍ରଜାପତିଟିଏ ଆଙ୍କି ତାକୁ କାଟିଦିଅ । ରିଫିଲରୁ ୩ ସେ.ମି. ଲମ୍ବର ଦୁଇଖଣ୍ଡ କାଟ ଓ କାଗଜର ପଛପଟେ ସେଲୋଟେପ୍‌ରେ ଲଗାଇଦିଅ । ଦେଖିବ ଯେପରି ରିଫିଲ ଦୁଇଟିର ଉପର ମୁଣ୍ଡ ପ୍ରାୟ ୧୫° କୋଣ କରୁଥିବ ।



- ପ୍ରାୟ ୬୦ ସେ.ମି. ଲମ୍ବାର ଦୁଇଖଣ୍ଡ ସୂତା ଆଣି ଆଇସକ୍ରିମ କାଠିର ଦୁଇ ମୁଣ୍ଡରେ ବାନ୍ଧିଦିଅ । କାଠି ଉପରୁ ବନ୍ଧା ଯାଇଥିବା ସୂତା ଦୁଇ ଖଣ୍ଡକୁ ପ୍ରଜାପତିର ଷ୍ଟ୍ରୁ ଦୁଇଟି ଭିତରେ ପୂରାଅ । ସୂତା ଦୁଇଟିର ତଳମୁଣ୍ଡରେ ଦୁଇଟି ଛୋଟ ଷ୍ଟ୍ରୁ ଖଣ୍ଡ ବାନ୍ଧିଦିଅ, ଯେପରି ସୂତା ବାହାରିନଯାଏ ।





- ବର୍ତ୍ତମାନ ତୁମର କାଠଚଢ଼ା ପ୍ରଜାପତି ତିଆରି ହୋଇଗଲା । କାଠରେ କଣ୍ଟାଟିଏ ପୋତି ସେଥିରେ ଆଇସ୍‌କ୍ରିମ କାଠିର ମଝି ଅଂଶକୁ ବାନ୍ଧିଦିଅ । ସୂତା ଦୁଇଟିର ମୁଣ୍ଡକୁ ଧରି ଥରେ ବାଁ ଓ ଥରେ ଡାହାଣ କରି ଟାଣିଲେ ପ୍ରଜାପତିଟି କାଠରେ ଉପରକୁ ଚଢ଼ିବ ।

# କାଗଜରୁ ଘର ତିଆରି

**ବାଲିରେ ଘର କରି ଆମେ ଖେଳିଥିବା । କାଗଜ କାଟି ମଧ୍ୟ ଅନେକ ପ୍ରକାରର ଘର କରିଥିବା । ଏବେ ସେହିଭଳି କାଗଜରେ ଗୋଟିଏ ଘର ତିଆରି କରିବା ।**

*କ'ଣ ଦରକାର:*

- ମୋଟା କାଗଜ ଦୁଇଖଣ୍ଡ, ଅଠା, କଇଁଚି, ବ୍ଲେଡ୍



*କିପରି କରିବ*

- ଆୟତାକାର କାଗଜଟିକୁ ଭାଙ୍ଗି ଦୁଇଭାଗ କର ।
- ଦୁଇ ପରସ୍ତିଆ କାର୍ଡର ବନ୍ଦ ପଟେ ଭିତର ଆଡକୁ ଅଳ୍ପ କାଟିଦିଅ । କଟା ଅଂଶଟି କାଗଜର ମଝିରେ ରହିଲେ ଭଲ । କଟା ଅଂଶଟିକୁ -- ଗାର ଉପରେ ମୋଡିଦିଅ । ମୋଡା ଦାଗଟିକୁ ଭଲ କରି ଚିପିଦିଅ ଓ କଟା ଅଂଶଟି ଖୋଲିଦିଅ ।





- ଏବେ ପୂରା କାଗଜଟିକୁ ଖୋଲିଦିଅ । କାଗଜଟିକୁ ଚଟାଣ ଉପରେ ବିଛାଇ ଦେଇ -- ଗାର ଉପରେ କାଟିଦିଅ । ଏବେ ବ୍ଲେଡରେ କଟା ଯାଇଥିବା ଅଂଶଗୁଡିକୁ -- ଗାର ଉପରେ ମୋଡି ଭଲ କରି ଚିପି ଦାଗ କରିଦିଅ । ଘରର କବାଟ ଝରକା ମିଳିଯିବ ।



- ଆଗରୁ ମିଳିଥିବା କଟା ଅଂଶଟି ଭିତର ପଟକୁ ଠେଲି ଦେଇ ଭଲ କରି ଚିପିଦିଅ ଓ କାଗଜଟିକୁ ଖୋଲିଦିଅ । ଘରଟିଏ ମିଳିଯିବ ।
- ଏବେ ପୂରା କାଗଜଟିକୁ ଦ୍ୱିତୀୟ କାଗଜଟି ଉପରେ ଅଠା ଦେଇ ଲଗାଇଦିଅ । କାଗଜଟିକୁ ଭାଙ୍ଗି ରଖିଦେଇ ହେବ । ଖୋଲିଲା ବେଳକୁ ସୁନ୍ଦର ଘର ଥିବା କାର୍ଡ଼ଟିଏ ମିଳିବ ।



# ଘୁରନ୍ତା ଘର

ଆମେ କେତେପ୍ରକାର ଘରେ ରହୁଛେ । ଯଦି ଆମେ ରହୁଥିବା ଘରଟି ନିଜ ଚାରିପଟେ ଘୁରୁଥା'ନ୍ତା ତେବେ କେତେ ମଜା ଲାଗନ୍ତା । ଗୋଟିଏ ଜାଗାରେ ବସି ଆମେ ଚାରିପଟକୁ ଦେଖିପାରନ୍ତେ । ଆଜିକାଲି ଅନେକ ସହରରେ ଏହିଭଳି ଘୂରନ୍ତା ଘରମାନଙ୍କରେ ଅଫିସ, ହୋଟେଲ ଆଦି କରାଯାଉଛି ।

*କ'ଣ ଦରକାର:*

- ତିନିଖଣ୍ଡ କାର୍ଡ଼ବୋର୍ଡ଼ ବା ପୁରୁଣା ପୋଷ୍ଟକାର୍ଡ଼, ଖାଲି ରିଫିଲ, କଇଁଚି, ରବର ଟୁକୁଡ଼ା ଓ ଡେନ୍‌ଡ୍ରାଇଟ

*କିପରି କରିବ*



- ଗୋଟିଏ କାର୍ଡ଼ବୋର୍ଡ଼ ବା ପୁରୁଣା ପୋଷ୍ଟକାର୍ଡ଼ ନେଇ ତାହାକୁ ମଝିରୁ ଭାଙ୍ଗି ଦୁଇଭାଗ କରି କାଟିଦିଅ।



- କଟାଯାଇଥିବା କାର୍ଡ଼ (ବର୍ଗାକାର)ରୁ ଗୋଟିଏ ଭାଗ ନେଇ ଚିତ୍ର ଭଳି ଗାର ପକାଅ ଓ ଗାର ଉପରେ ଭାଙ୍ଗିଦିଅ। ଭାଙ୍ଗ ପଡିବା ପରେ ତାହା ଗୋଟିଏ ତାରା ଭଳି ଦେଖାଯିବ।



- ଆର ଭାଗ କାର୍ଡ଼ଟିରୁ ଏକ ସେ.ମି. ଚଉଡ଼ାର ଚାରିଖଣ୍ଡ ପଟି କାଟ। ପଟି ଚାରୋଟିକୁ ତାରା ଛଟାର ଚାରୋଟି ଭାଙ୍ଗରେ ପରପୃଷ୍ଠାର ଚିତ୍ର ଭଳି ପୂରାଇ ଅଠାଦିଅ। କାଗଜପଟି ଚାରୋଟିର ତଳୁ ଅଳ୍ପ ମୋଡ଼ିଦିଅ।
- ଆଉ ଗୋଟିଏ ପୋଷ୍ଟକାର୍ଡ଼ ଉପରେ ପଟିଗୁଡ଼ିକର ଭଙ୍ଗା ଯାଇଥିବା ତଳ ଅଂଶରେ ଅଠା ଦେଇ ଲଗାଇଦିଅ।

❁ ତୃତୀୟ ପୋଷ୍ଟକାର୍ଡ଼ଟି ନିଅ। ସେଥିରେ ଛୋଟ ରବର ଟୁକୁଡ଼ା ବା ପୁରୁଣା ଚପଲ ସୋଲ୍‌ରୁ ଖଣ୍ଡେ ଅଠା ଦେଇ ଲଗାଇଦିଅ। ଏଥିପାଇଁ ସାଧାରଣ ଅଠା କାମ କରେନାହିଁ। ଡେନ୍‌ଡ୍ରାଇଟ ବା ରବର ସଲ୍ୟୁସନ ଏଥିପାଇଁ ଭଲ କାମ ଦିଏ।



❁ ରବର ଟୁକୁଡ଼ାରେ ଖଣ୍ଡେ ରିଫିଲ ପୂରାଇଦିଅ, ଯେପରି ତାହା ସିଧା ଠିଆହୋଇ ରହିବ।

❁ ଘରର ତଳ କାଗଜଟିରେ କଣା କରି ରିଫିଲଟିକୁ ଫୋଡ଼ି ଲଗାଇଦିଅ ଯେପରି ଘରଟି ରବର ଟୁକୁଡ଼ା ଉପରେ ଝୁଲିରହିବ।



❁ ତଳ ପୋଷ୍ଟକାର୍ଡ଼ର ଅଧିକା ଅଂଶରେ ଗାର ଉପରେ ଥରେ ଆଗକୁ ଓ ଥରେ ପଛକୁ ଚିତ୍ର ଭଳି ଭାଙ୍ଗିଦିଅ, ଦେଖିବ ଯେପରି ଭାଙ୍ଗଟି ରବର ଟୁକୁଡ଼ାଠାରୁ ଅଧିକ ଉଚ୍ଚ ହେବ।



❁ କାର୍ଡ଼ର ଭଙ୍ଗା ଯାଇଥିବା ଅଂଶରେ ଛୋଟ ରିଫିଲ ଖଣ୍ଡେ ପୂରାଇଦିଅ ଯେପରି ତାହା ଘର ସିଧାରେ ରହିବ। ଛୋଟ ରିଫିଲଟି ଘରର ଖୁମ୍ବ ସିଧାରେ ରଖି ଫୁଙ୍କ। ଘରଟି ଜୋରରେ ଘୂରିବ।

❁ କାଗଜର ଭାଙ୍ଗଟି ରବର ଟୁକୁଡ଼ାଠାରୁ ଛୋଟ ହୋଇଥିଲେ ପବନ ଘରର ଖୁମ୍ବ ଦେହରେ ବାଜିବନାହିଁ ଓ ଘର ଘୂରିବନାହିଁ।





# କାଗଜର ଘର

ପିଲାଦିନେ ବାଲିରେ ଘର ତିଆରି କରି ଖେଳିଥିବା । ଏବେ ଗୋଟିଏ କାଗଜକୁ ମୋଡ଼ି, ଅଠା ଦେଇ ଗୋଟିଏ ଘର ତିଆରି କରିବା ।

*କ'ଣ ଦରକାର:*

- ମୋଟାକାଗଜ, କଇଁଚି, ଅଠା

*କିପରି କରିବ*





- ଗୋଟିଏ ମୋଟାକାଗଜ ନେଇ ତାକୁ ଷୋହଳଟି ସମାନ ଭାଗ କରି ଗାର ପକାଅ ।
- ବାଁ ଓ ଡାହାଣ ଧାରର ମଝିରେ ଥିବା ଗାରଗୁଡ଼ିକରେ କାଟିଦିଅ । ମୋଟରେ ଛଅଟି ଜାଗାରେ କଟାହେବ ।




- ମଝିରେ ଥିବା ଦୁଇଟି ବର୍ଗ ଭିତରୁ ଗୋଟିକ ଉପରେ ଆରଟି ଚଢ଼ାଇ ଅଠା ଦେଇଦିଅ । ଏ ଦୁଇଟି ଘରର ତିନିକୋଣିଆ ଛାତ ହୋଇଗଲା ।




- ଦୁଇ କଡ଼ରେ ଥିବା ବର୍ଗ ଦୁଇଟି ଅଠା ଦେଇ ଯୋଡ଼ିଦିଅ । ଏ ଦୁଇଟି ଘରର କାନ୍ଥ ହେବ । ଆଉ କଡ଼ରେ ମଧ୍ୟ ବର୍ଗ ଦୁଇଟିକୁ ଯୋଡ଼ିଦିଅ । ତୁମର କାଗଜର ଘର ହୋଇଗଲା ।



# ରିଫିଲ୍ ଚକ୍ରି

**ଯେକୌଣସି ଚକ୍ରିଟିଏ ବୁଲୁଥିବା ଦେଖିଲେ ଭାରି ଖୁସି ଲାଗେ । ଏହିଭଳି ଗୋଟିଏ ବୁଲୁଥିବା ରିଫିଲ୍ ଚକ୍ରି ତିଆରି କରିବା ।**

*କ'ଣ ଦରକାର:*

- ଖାଲି ରିଫିଲ, କଇଁଚି, ସରୁ ତାର, ଛୁଞ୍ଚି ଓ ସୂତା ।

*କିପରି କରିବ:*



- ଖାଲି ରିଫିଲରୁ ଦୁଇ ସେ.ମି. ଲମ୍ବର ଛୋଟ ଖଣ୍ଡଟିଏ କାଟ ।
- ଗୋଟିଏ ସରୁତାରକୁ ମୋଡ଼ି U ଆକୃତି କର ।



- ତାରଟିକୁ ରିଫିଲ ଖଣ୍ଡଟିର ମଝିରେ ଏପରି ଭାବରେ ପୂରାଇଦିଅ ଯେପରି ତାହା ରିଫିଲ ଖଣ୍ଡଟିର ମଝିରେ ଝୁଲିରହିବ ।



- ଏବେ ତାରର ଖୋଲା ଦୁଇମୁଣ୍ଡ ବଡ଼ ରିଫିଲର ଗୋଟିଏ ମୁଣ୍ଡରେ ବାନ୍ଧିଦିଅ । ବାନ୍ଧିବାବେଳେ ଦେଖିବ ଯେପରି ଛୋଟ ରିଫିଲ ଖଣ୍ଡଟି ଆରାମରେ ଘୂରିପାରୁଥିବ ।



- ତୁମର ଚକ୍ରି ତିଆରି ହୋଇଗଲା । ବଡ଼ ରିଫିଲର ଖୋଲା ପଟରେ ଫୁଙ୍କିଲେ ଛୋଟ ରିଫିଲଟି ଚକ୍ରି ପରି ଘିରି ଘିରି ହୋଇ ବୁଲିବ ।

# କ୍ୟାପ୍‌ସୁଲ ଚିତପଟାଙ୍ଗ୍

ଛୋଟ ପିଲାମାନେ ମୁଣ୍ଡ ତଳକୁ କରି ଓଲଟି ଓଲଟି ମାଙ୍କଡ଼ଚିତ୍ ମାରୁଥିବାର ଦେଖିଥିବା । ଏବେ ସେହିଭଳି କାଗଜ ଉପରେ ମଧ୍ୟ କ୍ୟାପ୍‌ସୁଲ ଖଣ୍ଡେ ମାଙ୍କଡ଼ଚିତ୍ ମାରି ମାରି ଯିବ ।

*କ'ଣ ଦରକାର:*

- ପୁରୁଣା ଔଷଧ କ୍ୟାପ୍‌ସୁଲ୍, ସାଇକେଲର ଛୋଟ ବଲ୍, ଲମ୍ବା କାଗଜ ପଟି (ଡ୍ରଇଁସିଟ୍ ହେଲେ ଭଲ)

*କିପରି କରିବ:*

- ଔଷଧ ପୁରୁଣା ହୋଇଯାଇଥିଲେ କ୍ୟାପ୍‌ସୁଲ୍‌ର ଗୋଟିଏ ଭାଗକୁ ଖୋଲି ଔଷଧତକ ଖାଲି କରିଦିଅ ।
- ତା' ଭିତରେ ଗୋଟିଏ ଛୋଟ ସାଇକେଲ ବଲ୍ ପୂରାଇ ତାକୁ ବନ୍ଦ କରିଦିଅ ।
- ପ୍ରାୟ ୩୦ ସେ.ମି. ଲମ୍ବ ଓ ୫ ସେ.ମି. ଚଉଡ଼ାର ଗୋଟିଏ କାଗଜପଟି ବା ଡ୍ରଇଁସିଟ୍ ନେଇ ତାକୁ ମଝିରୁ ଲମ୍ବ ଭାବରେ ଭାଙ୍ଗିଦିଅ ଯେପରି ତାହା V ଆକୃତି ହୋଇ ରହିବ ।
- ଏଥର କାଗଜପଟି ଉପରେ କ୍ୟାପ୍‌ସୁଲ୍‌ଟି ରଖି ପଟିଟିକୁ ତଳକୁ ଅଣେଇଲେ କ୍ୟାପ୍‌ସୁଲ୍‌ଟି ତଳକୁ ଗଡ଼ି ଗଡ଼ି ଯିବ ।
- ଏହିଭଳି କିଛି କାଗଜପଟି ତିଆରି କରି ସେଗୁଡ଼ିକୁ ଲଗାଲଗି କରି ସଜାଡ଼ି ରଖିଲେ ସେଥିରେ କ୍ୟାପ୍‌ସୁଲ୍‌ଟି ଚିତ୍‌ପଟାଙ୍ଗ ମାରି ମାରି ତଳକୁ ଖସିବା ଦେଖିବାକୁ ଭାରି ମଜା ଲାଗିବ ।



# କାଗଜ ମାଙ୍କଡ଼ଚିତ୍

କ୍ୟାପ୍‌ସୁଲ୍‌ଟି ଯେପରି ମାଙ୍କଡ଼ଚିତ୍ ମାରି ତଳକୁ ଗଡ଼ି ଗଡ଼ି ଗଲା, ସେହିପରି କାଗଜଟିଏରେ ଗୋଟିଏ ଖେଳନା କରିବା ଯାହା ସେହିଭଳି ମାଙ୍କଡ଼ଚିତ୍ ମାରି ମାରି ଯିବ।

## କ'ଣ ଦରକାର:

- ବର୍ଗାକାର ମୋଟା କାଗଜ

## କିପରି କରିବ



- ବର୍ଗାକାର ମୋଟା କାଗଜଟିଏ ନେଇ ତା'ର ବାଁ ଧାର ସହ ଡାହାଣ ଧାର ମିଶାଇ ଭାଙ୍ଗିଦିଅ, ଯେପରି ମଝିରେ ଦାଗଟିଏ ରହିଯିବ। ଉପର ଦୁଇ କୋଣକୁ ମଝିଭାଗ ଯାଏଁ ଭାଙ୍ଗିଦିଅ।
- ଉପର କୋଣକୁ ତଳକୁ ଭାଙ୍ଗିଦିଅ ଯେପରି ତାହା ଅଧାରୁ ଟିକିଏ ତଳକୁ ଆସିବ।



- ତାକୁ ପୁଣି ଥରେ ଅଧା କରି ଭାଙ୍ଗିଦିଅ।
- ଏବେ ଦୁଇ ଧାରକୁ ମଝି ଦାଗ ଯାଏଁ ଭାଙ୍ଗିଦିଅ। ଭଲକରି ଦାବି ଖୋଲିଦିଅ।



- ତଳ ଦୁଇ ଧାରକୁ ବାଁପଟ ଓ ଡାହାଣ ପଟରେ ହୋଇଥିବା ଦାଗ ଯାଏଁ ଭାଙ୍ଗିଦିଅ।
- କାଗଜଟି ଏବେ ମାଙ୍କଡ଼ଚିତ୍ ମାରିବା ପାଇଁ ପୂରା ପ୍ରସ୍ତୁତ। ତାକୁ ତଳ ମୁହାଁ କରି ଠିଆ କରିଦେଲେ ତାହା ମୁଣ୍ଡ ତଳକୁ କରି ଗଡ଼ି ଗଡ଼ି ଯିବ।





# ବୋତାମର ଖେଳ

ସୂତାକୁ ଛନ୍ଦି ବା କାଗଜରୁ କିଛି ଅସମ୍ଭବ ପହଲି କରିବାକୁ ଭାରି ମଜା ଲାଗେ। ଏଠି ସେହିଭଳି ବୋତାମ ଓ କାଗଜକୁ ନେଇ ଗୋଟିଏ ମଜାଦାର ପହଲି କରିବା।

*କ'ଣ ଦରକାର:*

- କାଗଜ, ବୋତାମ ଦୁଇଟି, କଇଁଚି ଓ ସୂତା



*କିପରି କରିବ*

- ଗୋଟିଏ ୨୫ ସେ.ମି. ଲମ୍ବା ଓ ୧୫ ସେ.ମି. ଚଉଡ଼ାର କାଗଜଟିଏ ନେଇ ତଳୁ ଉପର ଯାଏଁ ଅଧା କରି ଭାଙ୍ଗିଦିଅ। ବାଁ ପଟ ଧାରରୁ ୨ ସେ.ମି. ଛାଡ଼ି ଗୋଟିଏ ଛୋଟିଆ କଣା କର।



- କାଗଜଟିକୁ ଖୋଲିଦେଇ ବାଁ–ଡାହାଣ ଭାଙ୍ଗି ଅଧାକର। ଏବେ ମଝି ଭାଙ୍ଗର ଉପରୁ ଓ ତଳୁ ଅଳ୍ପ ଛାଡ଼ି କାଟ। କାଟ ଦୁଇଟି ଆଗରୁ ବାଁ ପଟରେ ହୋଇଥିବା କଣାର ପାଖ ଯାଏଁ ହେବା ଦରକାର, କିନ୍ତୁ ତାକୁ ଯେପରି ଛୁଇଁବନାହିଁ। କାଗଜଟିକୁ ଖୋଲିଦିଅ।





- ବୋତାମ ଦୁଇଟିକୁ ସୂତାର ଦୁଇମୁଣ୍ଡରେ ସିଲେଇ କରିଦିଅ। କାଗଜଟିକୁ ଅଧାକରି ଭାଙ୍ଗ, କିନ୍ତୁ ଭାଙ୍ଗ ଦୁଇଟି ପୂରା ମିଶାଇ ଦିଅନାହିଁ। ଏବେ କଟା ହୋଇଥିବା ମଝି ଅଂଶଟି ଗୋଟିଏ ପତଳା ପଟି ଭଳି ହୋଇଯିବ। ଏହି ପଟିକୁ ବାଁ ପଟର କଣାରେ ପୂରାଇଦେଇ ସେଥିରେ ଗୋଟିଏ ବୋତାମ ଗଳାଇଦିଅ, ଯେପରି ବୋତାମ ଦୁଇଟି ପଟିର ଦୁଇ ପଟରେ ରହିବ। ଏବେ କାଗଜଟିକୁ ସିଧା କରିଦିଅ ଏବଂ ତୁମ ସାଙ୍ଗକୁ କୁହ କାଗଜଟିକୁ ନଚିରି ବା ସୂତାଟିକୁ ନଛିଣ୍ଡାଇ ବୋତାମଟିକୁ ବାହାର କରିବା ପାଇଁ।





# ଦିଆସିଲିର ଦୌଡ଼

**ନିଜ ଇଚ୍ଛା ଅନୁସାରେ ଗୋଟିଏ ଦିଆସିଲିକୁ ଏପଟ ସେପଟ କରିବା ଭଳି ଗୋଟିଏ ଖେଳନା ଆମେ ତିଆରି କରିପାରିବା ।**

*କ'ଣ ଦରକାର:*

- ଖାଲି ଦିଆସିଲି, ସୂତା



*କିପରି କରିବ*

- ଗୋଟିଏ ଖାଲି ଦିଆସିଲି ଖୋଳର ବାରୁଦପଟ ଦୁଇଟିରେ ଉପରୁ ପ୍ରାୟ ଦେଢ଼ ସେ.ମି. ଛାଡ଼ି ତେରଛା ଭାବରେ ଦୁଇଟି କଣା କର । କଣା ଦୁଇଟି ଯେପରି ଭିତର ଖୋଳ ଦେଇ ଯିବ ।



- ପେଡ଼ିର ଉପରପଟେ ଆଉ ଦୁଇଟି କଣା କର । ଗୋଟିଏ ମୋଟା ଛୁଞ୍ଚିରେ ପ୍ରାୟ ଦେଢ଼ ମିଟର ଲମ୍ବା ସୂତା ନେଇ ବାରୁଦପଟ କଣାରେ ଗଳାଇ ପେଡ଼ିର ଉପର କଣାରେ ବାହାର କର । ଆରପଟର କଣା ଦୁଇଟିରେ ସୂତାଟିକୁ ତଳକୁ ଆଣି ସୂତାର ଦୁଇମୁଣ୍ଡ ଯୋଡ଼ିଦିଅ । ପେଡ଼ିଟିକୁ ଟିକିଏ ଖୋଲିଲେ ଚିତ୍ର ଭଳି ଦେଖାଯିବ ।



- ଦୁଇହାତ ମେଲାଇ ସୂତାକୁ ଏପରି ଧର ଯେପରି ଆଙ୍ଗୁଠି ଭିତରେ ସୂତାଟି ଖସି ପାରୁଥିବ । ପେଡ଼ିର କଣା ପଟକୁ ଥିବା ହାତକୁ ଆଗପଛ ମୋଡ଼ି ସୂତାକୁ ଟାଣ । ଦିଆସିଲିଟି ବାଁ ପଟକୁ ଚାଲିବ । ସୂତାର ଶେଷ ମୁଣ୍ଡରେ ପହଞ୍ଚିଗଲେ ଦିଆସିଲିକୁ ହାତରେ ଭିଡ଼ି ପୁଣି ଥରେ ଆରମ୍ଭକୁ ଫେରାଇ ଆଣିବାକୁ ହେବ ।





# ଲମ୍ବା ପେଟ

**ଗୋଟିଏ ବିଲେଇକୁ ଟାଣି ତା'ର ପେଟ ଲମ୍ବା କରିବା ବା ଜିରାଫର ବେକ ଟାଣି ଲମ୍ବା କରିବା ପାଇଁ ଖେଳନାଟିଏ ତିଆରି କରିବା ।**

*କ'ଣ ଦରକାର:*

- ଖାଲି ଦିଆସିଲି ପେଡ଼ି, ଧଳା କାଗଜ, ସ୍କେଚ କଲମ, ଅଠା





*କିପରି କରିବ:*

- ଖାଲି ଦିଆସିଲି ପେଡ଼ିର ବାହାର ଖୋଳ ଓ ଭିତର ଖୋଳରେ ଅଠା ଦେଇ ଧଳା କାଗଜ ଲଗାଇଦିଅ ।
- ବିଲେଇର ପେଟ ଯାଏଁ ବାହାର ଖୋଳରେ ଏବଂ ପେଟଠାରୁ ଲାଞ୍ଜଯାଏଁ ଭିତର ଖୋଳରେ ଆଙ୍କିଦିଅ ।
- ଭିତର ଖୋଳକୁ ଦିଆସିଲି ଭିତରେ ପୂରାଇଦେଲେ ବିଲେଇର ଲମ୍ବା ଠିକ ହେବ । କିନ୍ତୁ ଖୋଳକୁ ଟାଣି ବାହାର କଲେ ତା'ର ପେଟ ଲମ୍ବିଯିବ ।
- ବିଲେଇ ଭଳି ଜିରାଫର ଚିତ୍ର ମଧ୍ୟ ଦିଆସିଲିର ଭିତର ଓ ବାହାର ଖୋଳରେ ଆଙ୍କି, ଦିଆସିଲିକୁ ଟାଣି ତା'ର ବେକ ଲମ୍ବା କରିପାରିବ ।









# ଶଗଡ଼ି

କୂଅରୁ ପାଣି କାଢ଼ିବା ବା ଅତି ଓଜନିଆ ଜିନିଷ ଉଠାଇବା ପାଇଁ ଶଗଡ଼ି କାମରେ ଲାଗିଥାଏ । ଏବେ ସେହିଭଳି ଗୋଟିଏ ଶଗଡ଼ି ତିଆରି କରିବା ।

*କ'ଣ ଦରକାର:*

- ଶସ୍ତା ପ୍ଲାଷ୍ଟିକ ବୋତାମ, ମୋଟା ଛୁଞ୍ଚି, ମହମବତୀ, ସୂତା, କାଗଜ କ୍ଲିପ୍

*କିପରି କରିବ*



- ସହଜରେ କଣା କରି ହେଉଥିବା ଦୁଇଟି ଶସ୍ତା ପ୍ଲାଷ୍ଟିକ୍ ବୋତାମ ନିଅ । ବୋତାମ ଦୁଇଟି ପଛକୁ ପଛ ଯୋଡ଼ି ଛୁଞ୍ଚିସୂତାରେ ସିଲେଇ କରିଦିଅ । ସିଲେଇ ଚାରିକୋଣିଆ (□) ଆକାରର କରିବ । ଛକି ପକାଇ (X) ସିଲେଇ କଲେ ବୋତାମର ମଝି ଅଂଶ ଘୋଡ଼ାଇ ହୋଇଯିବ ।



- ଗୋଟିଏ ଲମ୍ବା ଛୁଞ୍ଚିର ମୁନକୁ ଗରମ କରି ବୋତାମର ମଝିରେ ଗୋଟିଏ କଣା କର । ଏଇଟି ଗୋଟିଏ ଶଗଡ଼ି ହୋଇଗଲା ।



- ଶଗଡ଼ିକୁ ଝୁଲାଇବା ପାଇଁ କାଗଜ କ୍ଲିପ୍‌କୁ ଖୋଲିଦେଇ S ଆକାରର ଗୋଟିଏ ହାଙ୍ଗର ତିଆରି କର । ଏହାର ତଳପଟେ ଶଗଡ଼ିଟି ଝୁଲାଇଦିଅ । ହାଙ୍ଗରରୁ ଏହା ବାହାରି ଖସିନଯିବା ପାଇଁ ମୁହଁରେ ଖଣ୍ଡେ ଛୋଟ ସାଇକେଲ ଭାଲ୍‌ବ୍‌ଟ୍ୟୁବ୍ ଲଗାଇଦିଅ ।

# କାଗଜ ଚକ୍ରି

ଆମେ କାଗଜର ପବନ ଚକ୍ରି ତିଆରି କରି ଅନେକ ଥର ଉଡ଼ାଇଛେ । ଏବେ ଆଉ ଗୋଟିଏ ପ୍ରକାର ଚକ୍ରି କରିବା । ଏହାକୁ ହାତରେ ନଧରି ଚଟାଣରେ ଘୁରାଇବା ।

*କ'ଣ ଦରକାର:*

- ମୋଟା କାଗଜ ବା ଡ୍ରଇଁସିଟ୍, ବ୍ଲେଡ଼, ପୋଷ୍ଟକାର୍ଡ଼, ପିନ୍ କଣ୍ଟା, ଡ଼େନଡ୍ରାଇଟ୍, କାଠର ସୂତାରିଲ ।



*କିପରି କରିବ:*

- ମୋଟା କାଗଜ ବା ଡ୍ରଇଁସିଟ୍ ଉପରେ ରାଉଣ୍ଡର, ଡ଼ବା ଢାଙ୍କୁଣୀ ବା ଚୁଡ଼ି ସାହାଯ୍ୟରେ ଗୋଟିଏ ଗୋଲ ଆଙ୍କ । ଗୋଲର ପରିଧି ଉପରେ ପୋଷ୍ଟକାର୍ଡ଼ର ଗୋଟିଏ କୋଣକୁ ରଖ । ଗୋଲର ଯେଉଁ ଦୁଇଟି ଜାଗାରେ ପୋଷ୍ଟକାର୍ଡ଼ଟି ଛୁଉଁଛି, ସେ ଜାଗାରେ ଦୁଇଟି ଚିହ୍ନଦିଅ ।



- ସେହିପରି ପୋଷ୍ଟକାର୍ଡର କୋଣକୁ ଆଉ ଗୋଟିଏ ଜାଗାରେ ରଖି ଦୁଇଟି ଚିହ୍ନ ଦିଅ । ଏବେ ସାମନାସାମନି ଥିବା ଚିହ୍ନ ଦୁଇଟିକୁ ଯୋଡ଼ । ଗୋଲ ଭିତରେ ଦୁଇଟି ଗାର ପରସ୍ପରକୁ କାଟିବେ । ଯେଉଁ ବିନ୍ଦୁରେ ଗାର ଦୁଇଟି କାଟିବେ ସେହି ବିନ୍ଦୁଟି ଗୋଲର କେନ୍ଦ୍ର ହେବ ।





- ଏଥର ବୃତ୍ତର ପରିଧିକୁ ସମାନ ଛଅ ଭାଗ କର । ବୃତ୍ତର ବ୍ୟାସାର୍ଦ୍ଧ ମାପର ଚାପ ନେଇ ରାଉଣ୍ଡରରେ ପିରିଧିକୁ ଛେଦ କର । ଏହିପରି କଲେ ବୃତ୍ତର ପରିଧି ଛଅଭାଗ ହୋଇପାରିବ ।



❁ ଛଅଟି ବିନ୍ଦୁକୁ ଗାର ଟାଣି ଯୋଡ଼। ତା'ପରେ ଗାର ଉପରେ ଆଗପୃଷ୍ଠାର ଚିତ୍ରରେ ଦେଖାଗଲା ପରି ଚିହ୍ନ ଦିଅ।



❁ ଚିହ୍ନ ଦିଆ ହୋଇଥିବା ଛୋଟ ଛୋଟ ୫ଟି ଆୟତ କ୍ଷେତ୍ରର ବାହାର ପାଖକୁ ଛାଡ଼ି ଦେଇ ବାକି ତିନି ପାଖକୁ ବ୍ଲେଡ଼ ସାହାଯ୍ୟରେ କାଟିଦିଅ ଓ କଟା ଯାଇଥିବା ଅଂଶଗୁଡ଼ିକୁ ଉପରକୁ ମୋଡ଼ିଦିଅ।



❁ ବୃତ୍ତର କେନ୍ଦ୍ର ବିନ୍ଦୁରେ ଗୋଟିଏ ପିନ୍‌କଣ୍ଟାକୁ ଅଧା ପୂରାଇ ଡ଼େନ୍‌ଡ୍ରାଇଟ ଦେଇ ଶୁଖାଇଦିଅ।। ଫଳରେ ପିନ୍ କଣ୍ଟା ଆଉ କାଗଜ ଭିତରୁ ଖସିବନାହିଁ। ଅଠା ଶୁଖିଗଲା ପରେ ଖାଲି ସୂତା ରିଲ୍‌ରେ ପିନ୍ କଣ୍ଟା ପୂରାଇ ଫୁଙ୍କ। କ'ଣ ହେଉଛି ଦେଖ?

---

# ପିଚକାରୀ

**ଅତର ବୋତଲର ଠିପିକୁ ଚିପିଦେବା ମାତ୍ରେ ତା ଭିତରୁ ଛୋଟ ଛୋଟ ବୁନ୍ଦା ଆକାରରେ ଅତର ଛିଟିକି ଆସିବାର ଆମେ ଦେଖିଛେ। ସେହିଭଳି ଗୋଟିଏ ପିଚକାରୀ ତିଆରି କରି ଆମେ ଦେଖିବା।**

*କ'ଣ ଦରକାର:*

❁ ସ୍କେଚ୍ କଲମ ନଳୀ, ଖାଲି ରିଫିଲ ଓ ସରୁ ତାର



*କିପରି କରିବ*

❁ ସ୍କେଚ୍ କଲମର ମୁଣ୍ଡ ପଟୁ ପ୍ରାୟ ୧ ସେ.ମି. କାଟିଦିଅ।

❁ ଖାଲି ରିଫିଲ ଉପରେ ତାର ଗୁଡ଼ାଇଦିଅ। ତାରର ଆରମୁଣ୍ଡରେ ରିଫିଲଟି ଗୁଡ଼ାଇଦିଅ।

❁ ଏଥର ରିଫିଲଟିକୁ ଗ୍ଲାସରେ ଥିବା ରଙ୍ଗୀନ ପାଣିରେ ବୁଡ଼ାଇରଖ। ସ୍କେଚ୍ କଲମର ଚଉଡ଼ା ମୁହଁ ବାଟେ ଜୋରରେ ଫୁଙ୍କ। କ'ଣ ହେଉଛି?



# ବଢ଼େଇ ଭଅଁର

ବଢ଼େଇମାନେ ତାଙ୍କ ଭଅଁରରେ କାଠରେ କଣା କରନ୍ତି ।
ଗୋଟିଏ ସୂତାରେ କଣ୍ଟାକୁ ଘୂରାଇ କଣା କରିଥା'ନ୍ତି ।
ଆମେ ସେମିତି ଗୋଟିଏ ଭଅଁର କରି ଖେଳିବା ।



*କ'ଣ ଦରକାର:*

- ସୂତା ମଝିରେ ଥିବା ରିଲ୍, ଡିଭାଇଡ଼ର୍, ସୂତା, ସାଇକେଲ ସ୍ପୋକ ବା ବାଉଁଶ ପାତିଆ, ଫୁଲଝାଡ଼ୁର କାଠି ବା ଖାଲି ରିଫିଲ୍,



*କିପରି କରିବ:*

- ମେସିନ୍ ସୂତାର ମଝିରେ ଯେଉଁ କାଗଜର ରିଲ୍ ଥାଏ, ସେଥିରେ ତଳୁ ପ୍ରାୟ ୧ ସେ.ମି. ଛାଡ଼ି ଡିଭାଇଡର ସାହାଯ୍ୟରେ ଗୋଟିଏ କଣା କର। ଏହି କଣାରେ ଗୋଟିଏ ସୂତା ପୂରାଅ।



- ସୂତାର ଗୋଟିଏ ମୁଣ୍ଡରେ ସାଇକେଲ ସ୍ପୋକ ବା ବାଉଁଶ ପାତିଆର ଗୋଟିଏ ମୁଣ୍ଡ ବାନ୍ଧିଦିଅ। ସାଇକେଲ ସ୍ପୋକ ବା ବାଉଁଶ ପାତିଆକୁ ଧନୁ ଆକାରରେ ମୋଡ଼ି ସୂତାର ଆର ମୁଣ୍ଡ ସେଥିରେ ବାନ୍ଧିଦିଅ। ସୂତାଟି ଧନୁର ଗୁଣ ପରି ଟାଣ ନହୋଇ ଟିକିଏ ହୁଗୁଳା ହୋଇଥିବା ଦରକାର।



- ପ୍ରାୟ ୧୦ ସେ.ମି. ଲମ୍ବର ଗୋଟିଏ ଫୁଲଝାଡ଼ୁର କାଠି ବା ଖାଲି ରିଫିଲ ନିଅ। ଏହାର ଗୋଟିଏ ମୁଣ୍ଡରେ



ପ୍ରାୟ ୧ ସେ.ମି. ଲମ୍ବାରେ ଚିରିଦିଅ।



- କାଠିର ଅନ୍ୟ ମୁଣ୍ଡଟି ସୂତା ରିଲ୍ ଭିତରେ ପୂରେଇ ସୂତାଟିକୁ ବାହାରକୁ ଟାଣି ଆଣ।
- କାଠିଟିକୁ ୧୮୦ ଡିଗ୍ରୀ ଘୂରାଇ ପୁଣି ଥରେ ସୂତା ରିଲ୍ ଭିତରେ ପୂରେଇଦିଅ, ଯେପରି ସୂତାଟି କାଠି ବା ରିଫିଲ ଉପରେ ଥରେ ଗୁଡ଼େଇ ହୋଇଯିବ।
- ବଡ଼େଇ ଭଅଁର ତିଆରି ହୋଇଗଲା। ବଙ୍କା ହୋଇଥିବା ଷ୍ଟ୍ରୋକ ବା ବାଉଁଶ ପାତିଆକୁ ଧରି ଏପଟସେପଟ କଲେ ରିଫିଲଟି ବୁଲିବ। ଏହାକୁ ନେଇ ଆଉ ଗୋଟିଏ ଖେଳନା ତିଆରି କରିବା।

---

# ଚଢ଼େଇ ପଞ୍ଜୁରୀ ଖେଳନା

**କାଗଜର ଗୋଟିଏ ପଟେ ଚଢ଼େଇ ଓ ଆରପଟେ ପଞ୍ଜୁରୀ ରହିଥିଲେ ମଧ୍ୟ ତାକୁ ଘୂରାଇଲେ ତାହା ପଞ୍ଜୁରୀ ଭିତରେ ପଶିଯିବ। ବଢ଼େଇ ଭଅଁରରେ ଏହିପରି କାଗଜଟିଏ ଲଗାଇ ଖେଳିବା।**

*କ'ଣ ଦରକାର:*

- ଡ୍ରଇଁସିଟ୍, ବଢ଼େଇ ଭଅଁର

*କିପରି କରିବ:*

- ପ୍ରାୟ ୩ ସେ.ମି. ବର୍ଗର ଗୋଟିଏ ଡ୍ରଇଁସିଟ୍ ନେଇ ତା'ର ଗୋଟିଏ ପଟେ ଗୋଟିଏ ଚଢ଼େଇ ଓ ଆରପଟେ ଗୋଟିଏ ପଞ୍ଜୁରୀ ଚିତ୍ର କର। କାର୍ଡ଼ଟିକୁ କାଠି ବା ରିଫିଲର କଟାଯାଇଥିବା ଅଂଶରେ ପୂରେଇଦିଅ। ଷ୍ଟ୍ରୋକ୍ ବା ବାଉଁଶ ପାତିଆଟିକୁ ଧରି ଆଗ ପଛ କର ଓ ଦେଖ କ'ଣ ହେଉଛି।



# ଜାପାନୀ ପଙ୍ଖା

**ମେଳା ମଉଛବମାନଙ୍କରେ ରଙ୍ଗବେରଙ୍ଗର କେତେ ସୁନ୍ଦର ପଙ୍ଖା ମିଳେ । କିଣିବାକୁ ନିଶ୍ଚୟ ସମସ୍ତଙ୍କର ମନ ହୋଇଥିବ । କିନ୍ତୁ ସେହିଭଳି ମଜାଦାର ପଙ୍ଖାଟିଏ ତୁମେ ନିଜେ କରିପାରିବ । ତାକୁ ସାଙ୍ଗମାନଙ୍କୁ ଉପହାର ଭାବରେ ମଧ୍ୟ ଦେଇପାରିବ ।**

*କ'ଣ ଦରକାର:*



- ପୁରୁଣା ପୋଷ୍ଟକାର୍ଡ଼, ଖବରକାଗଜ, କଇଁଚି, ଷ୍ଟେପ୍‌ଲର୍ ବା ଛୁଞ୍ଚିସୂତା, ମୋଟା ସୂତା, ଅଠା, ସେଲୋଟେପ୍

*କିପରି କରିବ:*



- ଗୋଟିଏ ଖବରକାଗଜରୁ ୫୦ ସେ.ମି. ଲମ୍ବ ଓ ୧୦ ସେ.ମି. ଓସାରର ଖଣ୍ଡେ କାଟ ।
- ଓସାର ପଟକୁ ଲମ୍ବ ଭାବରେ ନେଇ ପ୍ରାୟ ୧.୫ ସେ.ମି. ଓସାରର ଭାଙ୍ଗ । ଭାଙ୍ଗଗୁଡ଼ିକ ଥରେ ଆଗକୁ ଓ ଥରେ ପଛକୁ ଭାଙ୍ଗ ଯେପରି ସେଗୁଡିକ ଢେଉ ଭଳି ରହିବ ।



- ଏହି ପଟିର ପ୍ରଥମ ଓ ଶେଷ ଭାଙ୍ଗରେ ଦୁଇଖଣ୍ଡ ମୋଟାସୂତା ଲଗାଇଦିଅ ଯେପରି ତାହା ବାହାରକୁ ପ୍ରାୟ ୫ ସେ.ମି. ଲମ୍ବ ରହିବ ।
- ୨୦ ସେ.ମି.ର ଗୋଟିଏ ବର୍ଗାକାର କାଗଜ ନେଇ ଭଙ୍ଗା କାଗଜର ଆରମୁଣ୍ଡରେ ଏପରି ଗୁଡ଼ାଇଦିଅ ଯେପରି ତାହା କାଗଜର ପ୍ରାୟ ୧–୨ ସେ.ମି. ଯାଏଁ ମାଡ଼ି ରହିବ ।



❁ ଏହାକୁ ଭଙ୍ଗାପଟି ସହ ଷ୍ଟେପ୍‌ଲର୍ ସାହାଯ୍ୟରେ ଯୋଡ଼ିଦିଅ। ଷ୍ଟେପ୍‌ଲର୍ ନମିଳିଲେ ଛୁଞ୍ଚିସୂତାରେ ସିଲେଇ କରି ଦେଇହେବ। ଏହା ପଙ୍ଖାର ହ୍ୟାଣ୍ଡଲ ହୋଇଗଲା।

❁ ଗୋଟିଏ ପୁରୁଣା ପୋଷ୍ଟକାର୍ଡ଼ର ଓସାର ପଟରେ ମୋଡ଼ି ନଳୀଟିଏ ତିଆରିକର, ଯେପରି ତା' ଭିତରେ ପଟି ଓ ହ୍ୟାଣ୍ଡଲ ସହଜରେ ପଶି ପାରୁଥିବ।

❁ ପୋଷ୍ଟକାର୍ଡ଼ ନଳୀ ଭିତରେ ହ୍ୟାଣ୍ଡଲ ସହ ଭଙ୍ଗା ପଟିକୁ ପୂରାଅ ଯେପରି ନଳୀର ଉପର ମୁଣ୍ଡ ଏବଂ ସୂତାଲଗା ପଟଟି ମିଶିଯିବ।

❁ ସୂତା ଦୁଇଟିକୁ ନଳୀର ବାହାର ପଟେ ସେଲୋଟେପ୍ ସାହାଯ୍ୟରେ ଲଗାଇଦିଅ। ଏବେ ହ୍ୟାଣ୍ଡଲକୁ ତଳପଟୁ ଉପରକୁ ଠେଲିଲେ ପଙ୍ଖାଟି ସୁନ୍ଦର ଭାବରେ ଖୋଲିବ।



---

# କଥାଶୁଣା ବୁଡାଳୀ

*କ'ଣ ଦରକାର:*

❁ ପ୍ଲାଷ୍ଟିକ ଡ୍ରପର, ପ୍ଲାଷ୍ଟିକ ପାଣି ବୋତଲ, ପତଳା ତାର

*କିପରି କରିବ*

❁ ଡ୍ରପରକୁ ଓଜନିଆ କରିବା ପାଇଁ ତା'ର ମୁହଁ ପାଖରେ କିଛି ତାର ଗୁଡାଇଦିଅ। ତାହା ତଳମୁହାଁ ହୋଇ ଭାସିବ। ଡ୍ରପର ଭିତରେ ପାଣି ପୂରାଇ ତାକୁ ବୋତଲ ଭିତରେ ପୂରାଅ, ଯେପରି ଡ୍ରପରଟି ପାଣିରେ ଠିକ ପାଣିର ସ୍ତରରେ ଭାସିବ। ସେହି ଅନୁସାରେ ଡ୍ରପରରେ ତାର ଓ ପାଣି କମ୍ ବେଶୀ କରିବାକୁ ହେବ। ଏବେ ବୋତଲର ଠିପି ବନ୍ଦ କରିଦିଅ। ବୋତଲଟି ଧରି ଚିପିଲେ ଡ୍ରପରଟି ତଳକୁ ଖସିଯିବ। ଢିଲା ଛାଡ଼ିଦେଲେ ଏହା ପୁଣିଥରେ ଉପରକୁ ଉଠିଆସିବ। ଏଥର ଡ୍ରପରଟି ତୁମ କଥା ମାନିବ।



# ବୋତାମ ସ୍ୱିଚ୍

**କାଗଜର ଘରଟିଏ ତିଆରି କରି ସେଥିରେ ଆଲୁଅ ବ୍ୟବସ୍ଥା କରିବା ପାଇଁ ସ୍ୱିଚ୍ ଦରକାର ପଡ଼େ। କିଣା ସ୍ୱିଚ୍ ବେଶ୍ ଅଧିକ ଦାମ୍। ପିଲାଙ୍କ ଜାମାରେ ଲାଗୁଥିବା ଚିପାବୋତାମ ବଢ଼ିଆ ସ୍ୱିଚ୍‌ର କାମ ଦିଏ। ଏକଲବ୍ୟର ବିବେକ ପାରସ୍କର ମଧ୍ୟ ଏହିଭଳି ବୋତାମ ସ୍ୱିଚ୍‌ର ଧାରଣା ଦେଇଥିଲେ।**

*କ'ଣ ଦରକାର:*

- ସାଇକେଲ ଟ୍ୟୁବ୍, ଚିପା ବୋତାମ ଦୁଇଟି (ଏଗୁଡ଼ିକ ପିତଳର ହେଲେ ଭଲ, କଳଙ୍କି ଲାଗିବନାହିଁ), ବିଦ୍ୟୁତ ତାର, ଛୋଟ ଟର୍ଚ୍ଚ ବଲ୍‌ବ୍, ବ୍ୟାଟେରୀ



*କିପରି କରିବ:*

- ଗୋଟିଏ ପୁରୁଣା ସାଇକେଲ ଟ୍ୟୁବ୍‌ରୁ ୧ ସେ.ମି. ଚଉଡ଼ାର ଖଣ୍ଡେ ପଟି କାଟି ତାକୁ ବ୍ୟାଟେରୀ ଉପରେ ଚଢ଼ାଇଦିଅ।



- ଟ୍ୟୁବ୍‌ର ଆଗ ଓ ପଛ ପାଖରେ ଦୁଇଟି କଣା କର।
- ଚିପାବୋତାମଟିଏ ନେଇ ତା'ର ଦୁଇ ଫାଳକୁ ଟ୍ୟୁବ୍‌ର କଣାରେ ପୂରାଇଦିଅ ଯେପରି ତାହା ବ୍ୟାଟେରୀର ଉପର ଓ ତଳ ପାଖରେ ଭଲ କରି ବସିଯିବ।



- ଏବେ ତଳ ପାଖର ବୋତାମରେ ତାର ଲଗାଇଦିଅ। ତାରର ଆର ମୁଣ୍ଡରେ ଦ୍ୱିତୀୟ ଚିପା ବୋତାମର ଫାଳେ ଲଗାଇଦିଅ।
- ଟର୍ଚ୍ଚ ବଲ୍‌ବ୍‌ରେ ତାର ଗୁଡ଼ାଇ ତାରକୁ ଦ୍ୱିତୀୟ ବୋତାମର ଆର ଫାଳକରେ ଯୋଡ଼ିଦିଅ। ଏବେ ବଲ୍‌ବ୍‌କୁ ବ୍ୟାଟେରୀର ଗୋଟିଏ ମୁଣ୍ଡରେ ଲଗାଇ, ବୋତାମର ଦୁଇ ଫାଳକୁ ଲଗାଇଦେଲେ ତାହା ସ୍ୱିଚ୍‌ର କାମ ଦେବ।



# ଅଣ୍ଟାଭଙ୍ଗା ନାଟୁଆ

**ଅଣ୍ଟାକୁ ହଲାଇ ନାଚି ପାରିବା ପାଇଁ ଅଣ୍ଟାଟି ସହଜରେ ନହକି ଯାଉଥିବା ଦରକାର । କାଗଜଟିଏରୁ ଏହିଭଳି ଅଣ୍ଟାଭଙ୍ଗା ନାଟୁଆଟିଏ ତିଆରି କରିବା ।**

*କ'ଣ ଦରକାର:*



- ୧୫ x ୧୦ ସେ.ମି ଲମ୍ବର ମୋଟା କାଗଜ ବା ଡ୍ରଇଁସିଟ୍, କଇଁଚି, ଅଠା, ରଙ୍ଗ କଲମ

*କିପରି କରିବ*



- ୧୫ x ୧୦ ସେ.ମି. ମାପର ଖଣ୍ଡିଏ ମୋଟା ଡ୍ରଇଁସିଟ୍ ନେଇ ଚିତ୍ର ଭଳି ଗାର ପକାଅ । କେବଳ (––) ଗାର ଉପରେ କାଟିଦିଅ । କାଗଜଟି ଠିକ୍ (····) ବିନ୍ଦୁ ଯାଏଁ କଟିବା ଦରକାର ।



- ଡାହାଣ ପଟରୁ ଛୋଟ ପଟି ଖଣ୍ଡିଏ ବାହାରିଯିବ । ପ୍ରତି କଟାଖଣ୍ଡରେ ଚିତ୍ର ଭଳି ହାତ, ମୁଣ୍ଡ, ଗୋଡ ଆଦି କଲମରେ ଆଙ୍କି ରଙ୍ଗ ଦିଅ । ହାତ, ଗୋଡ, ମୁଣ୍ଡ ଆଦିର ବାହାର ଧାରରେ କାଟିଦିଅ । ଏବେ ଲମ୍ବାଳିଆ କାଗଜପଟିରେ କେବଳ ହାତ, ଗୋଡ଼, ମୁଣ୍ଡ ଲାଗି ରହିବ ।



- ହାତ, ଗୋଡ଼, ମୁଣ୍ଡକୁ (––) ଗାରରେ ପଛ ପଟକୁ ଏବଂ କାଗଜପଟିକୁ (–·–·) ଗାରରେ ସାମ୍ନା ପଟକୁ ଭାଙ୍ଗ । ଏପରି ଭାଙ୍ଗିବା ଫଳରେ ଚାରିକୋଣିଆ ଡବାଟିଏ ମିଳିବ । ବଳିପଡୁଥିବା ସରୁଆ ପଟି ଖଣ୍ଡିକରେ ଅଠା ଲଗାଇ ଚପାଇଦେଲେ ଡବା ତିଆରି ହୋଇଗଲା । ଡବାଟିକୁ ବୁଢା ଆଙ୍ଗୁଠି ଓ ବିଶି ଆଙ୍ଗୁଠି ମଝିରେ ରଖି ଆସ୍ତେ କରି ଚିପି ଏପଟ ସେପଟ କଲେ ନାଟୁଆଟି ଅଣ୍ଟା ହଲାଇ ନାଚ କରିବ ।



# ଝୁଲନ୍ତା ମଣିଷ

ଗୋଟିଏ ସୂତା ଉପରେ କାଗଜର ମଣିଷଟିଏ ଝୁଲାଇ ରଖିବା ଏତେ ସହଜ ନୁହେଁ । କିନ୍ତୁ ଆମେ ଏବେ ଏମିତି ଖେଳନାଟିଏ ତିଆରି କରିବା ସେଥିରେ କାଗଜର ମଣିଷ ସୂତା ଉପରେ ଝୁଲି ରହିବ ।



*କ'ଣ ଦରକାର:*

- ଡ୍ରଇଁସିଟ୍, ସୂତା, କଇଁଚି, ଅଠା, ଦୁଇଟି ପଚିଶି ପଇସି ।

*କିପରି କରିବ:*

- ଗୋଟିଏ ୧୫ ସେ.ମି. x ୧୦ ସେ.ମି.ର ଡ୍ରଇଁସିଟ୍‌ରେ ଚିତ୍ରରେ ଦେଖାଯାଇଥିବା ଭଳି ମଣିଷ ଚିତ୍ରଟିଏ ଆଙ୍କି ତା'କୁ କାଟିଦିଅ ।
- ମଣିଷର ଦୁଇ ଗୋଡ଼ ପାଖରେ ପଚିଶି ପଇସି ଦୁଇଟିକୁ ଅଠା ଦେଇ ଲଗାଇଦିଅ ।
- ଏବେ ସୂତାଟିଏ କାନ୍ଥରେ ଟାଣିଦିଅ । ତା' ଉପରେ ମଣିଷଟିକୁ ଏପରି ଭାବରେ ଝୁଲାଇଦିଅ ଯେପରି ତା'ର ଦୁଇ ଗୋଡ଼ ସୂତାର ଦୁଇ ପାଖକୁ ରହିବ ।
- ମଣିଷଟି ସୂତା ଉପରେ ଆରାମରେ ଝୁଲିରହିବ ।
- ତାକୁ ହଲଚଲ କଲେ ମଧ୍ୟ ପଡ଼ିବନାହିଁ । କିଛି ସମୟ ଦୋହଲି ତାହା ପୁଣି ସ୍ଥିର ହୋଇଯିବ ।

# ଲମ୍ବା ହାତ

**ଗୋଟିଏ ଜାଗାରେ ବସି ଦୂରରେ ଥିବା ତୁମର ଜଣେ ସାଙ୍ଗର ମୁଣ୍ଡ ଛୁଇଁପାରିଲେ କେତେ ମଜା ନଲାଗିବ ସତେ ! ଏଥର ସେହିଭଳି ଗୋଟିଏ ମଜା ଖେଳନା ତିଆରି କରିବା ।**

*କ'ଣ ଦରକାର:*

- ୮ ସେ.ମି, ଲମ୍ବା ଓ ୨ ସେ.ମି. ଚଉଡାର ୧୨ଟି ମୋଟା ଟାଣ କାର୍ଡ୍‌ବୋର୍ଡ୍ ପଟି, ଦୁଇ ଖଣ୍ଡ ଡ୍ରଇଁସିଟ୍, ଡ୍ରଇଁ ପିନ୍, ଗୋଟିଏ ଲୁହା କଣ୍ଟା, ଅଠା





*କିପରି କରିବ*

- ଆଠଟି ପଟିରେ ଚିତ୍ର ଭଳି ତିନୋଟି କଣା କର ।
- ଚାରୋଟି ପଟିରେ ଦୁଇଟି କଣା କର । (ମଝିରେ ଓ ଡାହାଣ ପଟକୁ କଣା ଦୁଇଟି କର) ।
- ପଟିଗୁଡ଼ିକ ପିନ୍ ସାହାଯ୍ୟରେ ଚିତ୍ରଭଳି ଯୋଡ଼ିଦିଅ ।
- ଡ୍ରଇଁସିଟ୍ ଦୁଇ ଖଣ୍ଡରୁ ଦୁଇଟି ହାତ କାଟି ଅଠା ଦେଇ ଗୋଟିଏ ମୁଣ୍ଡରେ ଲଗାଇଦିଅ ।
- ଆରପଟର ପଟି ଦୁଇଟିକୁ ଧରି ଏପଟସେପଟ କଲେ ହାତ ଦୁଇଟି ପାଖକୁ ଆସିବ, ପୁଣି ଦୂରେଇଯିବ । ଏଇ ଲମ୍ବା ହାତଟି ନେଇ ଦୂରରେ ଥିବା ସାଙ୍ଗମାନଙ୍କର ମୁଣ୍ଡକୁ ଛୁଇଁଲେ କେତେ





# ଯାଦୁ ପଙ୍ଖା

ପଙ୍ଖାଟିଏ ଘୁରାଇବା ନାହିଁ, କିନ୍ତୁ ତାହା ବେଶ୍ ଜୋର୍‌ରେ ଘୂରିବ । କଥାଟା ଅଡୁଆ ଶୁଭୁଛି ନା! ତେବେ ସେହିଭଳି ଗୋଟିଏ ପଙ୍ଖା କରି ଘୁରାଇବା ।

*କ'ଣ ଦରକାର:*

- ପ୍ରାୟ ୩୦ ସେମି. ଲମ୍ବର ମୋଟା ବାଉଁଶକଣି ବା ପୁରୁଣା କଲମ, ଛୋଟ କଣ୍ଟା, ମୋଟା କାଗଜପଟି ବା ଆଇସକ୍ରିମ କାଠି, ଛୁରୀ

*କିପରି କରିବ:*



- ଗୋଟିଏ ବାଉଁଶକଣି ବା ପୁରୁଣା କଲମ ଉପରେ ଛୁରୀରେ ପ୍ରାୟ ୧ ସେ.ମି. ଲେଖାଏଁ ଛାଡି ଦାଗଦିଅ ।
- ଏହି ଦାଗ ଜାଗାରେ ଗହିରିଆ କରି ଘାଇ କାଟ । ପ୍ରାୟ ୧୫ଟି ଘାଇ କଟାହେବା ଦରକାର ।
- ମୋଟା କାଗଜରୁ ପ୍ରାୟ ୩ ସେ.ମି. ଲମ୍ବ ଓ ୧ ସେ.ମି. ଚଉଡାର ଖଣ୍ଡେ କାଟ ।



- ଏହାର ଦୁଇମୁଣ୍ଡକୁ କଇଁଚିରେ କାଟି ଗୋଲିଆ କରିଦିଅ । ଏହାର ଠିକ୍ ମଝିରେ କଣାଟିଏ କର ଯେଉଁଥିରେ କଣ୍ଟାଟି ସହଜରେ ପଶିପାରିବ ।
- ଏବେ କାଗଜପଟା ଖଣ୍ଡଟିକୁ କଟାଦାଗ ଥିବା କାଠିର ଗୋଟିଏ ପଟେ କଣ୍ଟା ଦ୍ୱାରା ଲଗାଇଦିଅ, ଯେପରି କଣ୍ଟାଟି କାଠିରେ ଗଳିଯାଇ ବାଉଁଶ କଣି ସହ ଶକ୍ତ ହୋଇ ଲାଗିରହିବ ଏବଂ କଣ୍ଟା ଚାରିପାଖେ ପଟି ଖଣ୍ଡିକ ସହଜରେ ବୁଲିପାରିବ ।



❁ ଏଥର କାଠିଟିକୁ ଗୋଟିଏ ହାତରେ ଧରି ହାଗ ଉପରେ ଅନ୍ୟ ଗୋଟିଏ କାଠିକୁ ଜୋର ଜୋର ଘଷି ଚାଲ। କ'ଣ ହେଉଛି ? ପଙ୍ଖାଟିକୁ ନଚ୍ଛୁଇଁ ମଧ୍ୟ ତାହା କେତେ ଜୋରରେ ଘୂରୁଛି !



---

# ଜେଟ୍ ଡଙ୍ଗା

**ଡଙ୍ଗାରେ ପାଲଟିଏ ଟାଣିଦେଲେ ତାହା ପବନରେ ଠେଲିହୋଇ ଜୋରରେ ଚାଲେ । ସେହିପରି ପବନ ଜେଟ୍‌ରେ ମଧ୍ୟ ଡଙ୍ଗା ବେଶ୍ ମଜାରେ ଜୋରରେ ଚାଲିପାରିବ । ଏବେ ପବନ ଜେଟ୍‌ରେ ଚାଲୁଥିବା ଡଙ୍ଗାଟିଏ ତିଆରି କରିବା ।**

*କ'ଣ ଦରକାର:*

❁ ବେଲୁନ, ରିଫିଲ, ଶୋଲ ବା ପ୍ଲାଷ୍ଟିକ

*କିପରି କରିବ*

❁ ଗୋଟିଏ ବେଲୁନ ମୁହଁରେ ଖଣ୍ଡେ ଖାଲି ରିଫିଲ ପୂରାଇ ଭଲ କରି ବାନ୍ଧିଦିଅ। ଶୋଲ, ପ୍ଲାଷ୍ଟିକ ବା କାଗଜରେ ଗୋଟିଏ ଡଙ୍ଗା ତିଆରିକର। ପୁରୁଣା ଚଟି ବା ସାବୁନ ଖୋଳଟିଏ ବି ଚଳିବ।

❁ ଡଙ୍ଗା ଦେହରେ ରିଫିଲଟିକୁ ଫୋଡ଼ିଦିଅ ଯେପରି ବେଲୁନଟି ଡଙ୍ଗା ଉପରେ ରହିବ ଓ ରିଫିଲର ଖାଲି ମୁଣ୍ଡ ଡଙ୍ଗା ତଳେ ବାହାରିବ। ଏଥର ଡଙ୍ଗାର ତଳପଟରୁ ରିଫିଲ ବାଟରେ ବେଲୁନକୁ ଫୁଙ୍କିଦିଅ। ରିଫିଲର ମୁହଁକୁ ଆଙ୍ଗୁଠିରେ ବନ୍ଦ କରି ଧରି ଡଙ୍ଗାକୁ ପାଣିରେ ଛାଡ଼। ପାଣି ତଳେ ରିଫିଲ ମୁହଁରୁ ହାତ କାଢ଼ିନିଅ। ବେଲୁନର ପବନ ରିଫିଲ ବାଟରେ ବୁଦ୍‌ବୁଦ୍ ହୋଇ ବାହାରିବ ଓ ଡଙ୍ଗାକୁ ଆଗକୁ ଠେଲିବ।



# ପ୍ଲାଷ୍ଟିକ ଡ଼ଙ୍ଗା

ବର୍ଷାଦିନେ କାଗଜର ଡଙ୍ଗା କରି ଭସାଇବାକୁ ଭାରି ମଜା ଲାଗେ । ସେହିଭଳି ଗୋଟିଏ ଡଙ୍ଗା ପ୍ଲାଷ୍ଟିକରେ କରି ପାଣିରେ ଭସାଇବା ।

*କ'ଣ ଦରକାର:*

- ପତଳା ପ୍ଲାଷ୍ଟିକପଟି (ପ୍ଲାଷ୍ଟିକ ଜିଭଛେଲା ହେଲେ ଭଲ), କଇଁଚି, ଆଳତୀ କର୍ପୂର, ଫନ୍ଦଥିବା ଥାଳି



*କିପରି କରିବ:*

- ପ୍ଲାଷ୍ଟିକପଟି, ଜିଭଛେଲା ବା ସେହିପରି ହାଲୁକା ପ୍ଲାଷ୍ଟିକ୍‌ଟିଏ ନେଇ ସେଥିରୁ ଛୋଟ ଛୋଟ ଡ଼ଙ୍ଗା ଆକାରରେ କେତେଖଣ୍ଡ କାଟ ।
- ପୂଜା ଜିନିଷ ଯେଉଁ ଦୋକାନରେ ମିଳେ ବା ତେଜରାତି ଦୋକାନରେ ମିଳୁଥିବା ଆଳତୀ କର୍ପୂର କିଛି ଡ଼ଙ୍ଗାର ତଳପଟେ ଲଗାଇଦିଅ ।



- ଫନ୍ଦ ଥିବା ଗୋଟିଏ ଚଟକା ଥାଳି ବା ସେହିଭଳି ଚଉଡ଼ା ମୁହଁବାଲା ଜାଗାରେ କିଛି ପାଣିନିଅ ।
- କର୍ପୂର ଲଗା ଡ଼ଙ୍ଗାଗୁଡ଼ିକୁ ଧୀରେ ନେଇ ପାଣି ଭିତରେ ଛାଡିଦିଅ । ଦେଖ କ'ଣ ହେଉଛି?



# ସିଲେଇ କଳ

**ସିଲେଇ କଳରେ ସିଲେଇ କଲାବେଳେ ଯେପରି ଶବ୍ଦ କରିଥାଏ ଓ କପଡ଼ାରେ କଣା ହୋଇଥାଏ ଆମେ ସେହିଭଳି ଗୋଟିଏ ସିଲେଇ କଳ କରିବା ।**

*କ'ଣ ଦରକାର:*

- ଗୋଟିଏ ନଡ଼ିଆ ଗୋଟକା (ଅତି ସାନ ନଡ଼ିଆ କସି) କିମ୍ବା ଡିମିରି ଫଳ (କିଛି ନମିଳିଲେ ଛୋଟ ଆଳୁ), ୨୫ ସେ.ମି. ଲମ୍ବର ୩ ଖଣ୍ଡ ଖଡ଼ିକାକାଠି ବା ସରୁ ବାଉଁଶପାତିଆ ।



*କିପରି କରିବ:*

- ଖଡ଼ିକାକାଠିକୁ ବଙ୍କାଇ ଦୁଇ ମୁଣ୍ଡକୁ ନଡ଼ିଆ ଗୋଟକା ଭିତରେ ପୂରାଅ ।
- ପ୍ରାୟ ୧୫ ସେ.ମି. ଲମ୍ବର ଆଉ ଖଣ୍ଡେ ଖଡ଼ିକା ସିଧାକରି ଗୋଟକା ଭିତରେ ପୂରାଅ ଯେପରି ତାହା ବଙ୍କା ଖଡ଼ିକାର ମଝି ଜାଗାରେ ଚିପିହୋଇ ରହିବ ।
- ୨୦ ସେ.ମି. ଲମ୍ବର ଦୁଇଖଣ୍ଡ ଖଡ଼ିକା ପ୍ରଥମ ଦୁଇ ଖଡ଼ିକାର ମଝିରେ ରଖ । ଶେଷ ଖଡ଼ିକା ଦୁଇଖଣ୍ଡର ମୁଣ୍ଡକୁ ଧରି ହାତକୁ ବୁଲାଅ ଯେପରି ନଡ଼ିଆ ଗୋଟକାଟି ଘୂରିବ । ଏଭଳି ଘୂରାଇଲେ ଠିକ୍ ଗୋଟିଏ ସିଲେଇ କଳ ଚାଲୁଥିଲା ଭଳି ଟିକ୍ ଟିକ୍ ଶବ୍ଦ ବାହାରିବ ।
- ଗୋଟିଏ ପତ୍ରକୁ ଚିତ୍ର ଭଳି ଖଡ଼ିକା ମଝିରେ ରଖ । ଆଗଭଳି ଘୂରାଇଲେ ଶବ୍ଦ ବାହାରିବ । ପତ୍ର ଉପରେ ଧାଡ଼ିଏ କଣା ଦାଗ ମଧ୍ୟ ଦେଖାଯିବ – ଯେପରି ତାହା ସିଲେଇ କଳ ଭିତରେ ଯାଇଛି ।

# ଆଖିନଚା କଣ୍ଢେଇ

ପିଲାଦିନେ ଦେଖିଥିବା କଣ୍ଢେଇକୁ ତଳ ଉପର କଲେ ସେ ଆଖି ନଚାଉଥିଲା । ଏବେ କାଗଜରେ ଭାଙ୍ଗି ସେହିଭଳି ଗୋଟିଏ ଆଖିନଚା କଣ୍ଢେଇ କରିବା ।





*କ'ଣ ଦରକାର:*

- ମୋଟାକାଗଜ, କାର୍ବନ କାଗଜ, ପେନ୍‌ସିଲ୍

*କିପରି କରିବ*

- କାଗଜଟିକୁ ଅଧା କରି ଭାଙ୍ଗି ତା' ଭିତରେ ଗୋଟିଏ କାର୍ବନ କାଗଜ ରଖ ।
- ଉପର ପରସ୍ତ କାଗଜରେ ଗୋଟିଏ ମୁହଁ ଆଙ୍କ । କିନ୍ତୁ ସେଥିରେ ଆଖିର ଡୋଳା କରିନଥିବ ।
- ଏବେ କାର୍ବନ କାଗଜଟି କାଢ଼ିଦିଅ ।
- ଉପର ପରସ୍ତ ମୁହଁର ଆଖିର ବାଁପଟକୁ ଆଖିଡୋଳା ଦୁଇଟି କର ।
- ସେହିପରି ତଳ ପରସ୍ତ ମୁହଁରେ ଡାହାଣପଟକୁ ଆଖିଡୋଳା କର ।
- ଉପର ପରସ୍ତ କାଗଜଟିରେ ପେନ୍‌ସିଲ୍ ଦେଇ ମୋଡ଼ିଦିଅ, ଯେପରି ତାହା ଗୁଡ଼ାଇହୋଇ ରହିବ ।
- ଏବେ ଉପର ପରସ୍ତ କାଗଜର ଗୁଡ଼ା ହୋଇଥିବା ଅଂଶକୁ ଏପଟସେପଟ କଲେ କଣ୍ଢେଇଟି ଡୋଳା ହଲାଇବ ।










# ରଙ୍ଗର ଦୁନିଆ

**ଆମ ଚାରିପଟେ କେତେ ରକମର ରଙ୍ଗ ରହିଛି । ସେ ସବୁକୁ ଫେଣ୍ଟିଦେଲେ ପୁଣି ଆହୁରି କେତେ ରଙ୍ଗ ମିଳିଯାଏ । ଲାଲ, ହଳଦିଆ ଓ ନୀଳ ରଙ୍ଗକୁ ମିଶାଇଲେ କେତେ ରଙ୍ଗ ବାହାରିବ ଦେଖିବା ।**



*କ'ଣ ଦରକାର:*

- ପୁରୁଣା ପୋଷ୍ଟକାର୍ଡ୍, ଲାଲ, ହଳଦିଆ ଓ ନୀଳ ରଙ୍ଗର ଜରି କାଗଜ (ବଲ୍ବ୍ ଉପରେ ଯେଉଁ କାଗଜ ଗୁଡ଼ାହୁଏ), ଅଠା



*କିପରି କରିବ:*

- ଗୋଟିଏ ପୁରୁଣା ପୋଷ୍ଟକାର୍ଡ୍କୁ ଲମ୍ବ ଭାବରେ ତିନିଭାଗ କରି ଭାଙ୍ଗିଦିଅ ।
- ଗୋଟିଏ ଡିଭାଇଡ଼ରରେ ଗୋଲ କଣାଟିଏ କର । କଣା ଯେପରି ପୋଷ୍ଟକାର୍ଡ୍ର ତିନି ପରସ୍ତ ଯାକରେ ହୋଇଥିବ । ଏବେ ପୋଷ୍ଟକାର୍ଡ୍ଟିକୁ ଖୋଲିଦିଅ ।



- ପ୍ରତି ଭାଗରେ ଗୋଟିଏ ଲେଖାଏଁ କଣା ହୋଇଥିବ । ସେହି କଣାରେ ଲାଲ, ହଳଦିଆ ଓ ନୀଳ ଜରି ଖଣ୍ଡେ ଲେଖାଏଁ ଅଠା ମାରି ଲଗାଇଦିଅ ।
- ତୁମର ରଙ୍ଗର ଦୁନିଆ ହୋଇଗଲା । ଏବେ ତୁମେ ଯେକୌଣସି ଦୁଇଟି ରଙ୍ଗ ମିଶାଇ ଦେଖ କେଉଁ ରଙ୍ଗ ମିଳୁଛି । ତିନୋଟି ଯାକ ରଙ୍ଗ ମିଶାଇଲେ କ'ଣ ହେଉଛି?



# ଯାଦୁବାକ୍ସ

ଗୋଟିଏ ଘନ ବାକ୍ସର ସବୁଆଡ଼ ନିବୁଜ ହୋଇଥାଏ । ଏହାକୁ ନ ଭାଙ୍ଗି ବା ଯୋଡ଼ା ଅଂଶକୁ ଅଲଗା ନକରି ଭିତର କାନ୍ଥ ବାହାରକୁ ଓ ବାହାର କାନ୍ଥକୁ ଭିତରକୁ କରିବା ସମ୍ଭବ ନୁହେଁ । କିନ୍ତୁ ଏଠାରେ ଯେଉଁ କୁହୁକବାକ୍ସ ତିଆରି କରିବା ସେଥିରେ ଏଭଳି କରିହେବ ।

### କ'ଣ ଦରକାର:

- ମୋଟା କାଗଜପଟିରୁ କଟା ଯାଇଥିବା ୫ ସେ.ମି.ର ଛଅଟି ବର୍ଗ, କଇଁଚି, ସେଲୋଟେପ୍,



### କିପରି କରିବ:

- ଛଅଟି ବର୍ଗକ୍ଷେତ୍ର ଭିତରୁ ଦୁଇଟି ବର୍ଗକ୍ଷେତ୍ରର କର୍ଣ୍ଣରୁ କାଟିଦେଇ ଚାରିଭାଗ କର ଯେପରି ଦୁଇଟି ଲେଖାଏଁ ତ୍ରିଭୁଜ ମିଳିବ ।



- ଏବେ ମୋଟରେ ଚାରିଟି ବର୍ଗକ୍ଷେତ୍ର ଓ ଚାରିଟି ତ୍ରିଭୁଜ ରହିଥିବ ।



- ଏହି ଚାରିଟି ବର୍ଗକ୍ଷେତ୍ର ଓ ଚାରିଟି ତ୍ରିଭୁଜକୁ ତଳର ଚିତ୍ର ଭଳି ସଜାଇରଖ । ଯେଉଁଠି ତ୍ରିଭୁଜ ଓ ବର୍ଗକ୍ଷେତ୍ରର ଧାର ମିଶୁଛି ସେ ଜାଗାମାନଙ୍କରେ ଚିହ୍ନ ଦିଅ ଏବଂ ସେଲୋଟେପ୍ ଲଗାଇ ସେଗୁଡ଼ିକୁ ଯୋଡ଼ିଦିଅ ।



* ଶେଷରେ ବାଁ ପାଖ ମୁଣ୍ଡରେ ଥିବା ତ୍ରିଭୁଜର ଖ ବାହୁକୁ ଡ଼ାହାଣ ପାଖରେ ଥିବା ବର୍ଗକ୍ଷେତ୍ରର କ ବାହୁ ସହ ସେଲୋଟେପ୍ ଦ୍ୱାରା ଯୋଡ଼ିଦିଅ।



* ଏବେ ତୁମର ଯାଦୁବାକ୍ସ ହୋଇଗଲା। ଏହାକୁ ବୁଲାଇଲେ ଭିତର ପାଖ ବାହାରକୁ ଏବଂ ବାହାର ପାଖ ଭିତରକୁ ବୁଲିଯିବ। ନିଜେ ଏଥର ଏହି ବାକ୍ସର ଭିତର କାନ୍ଥ ବାହାରକୁ ଆଣିବାକୁ ଚେଷ୍ଟାକର।



* ବାକ୍ସ ତିଆରି କରିବା ଆଗରୁ କାଗଜର ଗୋଟିଏ ପଟରେ ରଙ୍ଗ ଦେଇଦେଲେ ଆହୁରି ସୁନ୍ଦର ଦେଖାଯିବ।
* କେମିତି ଓଲଟାଇବ: ବାକ୍ସଟିକୁ ଏପରି ଚାପିଦିଅ ଯେପରି ସେଥିରେ ଦୁଇଟି ବର୍ଗକ୍ଷେତ୍ର ଓ ଦୁଇଟି ତ୍ରିଭୁଜ ଧଳା ଏବଂ ଦୁଇଟି ତ୍ରିଭୁଜ କଳା (ଭିତର ପାଖ) ଦେଖାଯିବ। ଏଥର ବର୍ଗାକାର ଆକୃତିଟିକୁ ମଝିରୁ ଦୁଇଭାଗ କର ଯେପରି ଉପରେ ଗୋଟିଏ ବର୍ଗକ୍ଷେତ୍ର ଓ ଗୋଟିଏ ତ୍ରିଭୁଜ ଧଳା ଏବଂ ଗୋଟିଏ ତ୍ରିଭୁଜ କଳା ରହିବ। ଏବେ ଡାହାଣ ପାଖର ବର୍ଗକ୍ଷେତ୍ରକୁ ତଳକୁ ଖୋଲିଦିଅ. ଗୋଟିଏ କଳା ରଙ୍ଗର ଷଡ଼ଭୁଜ ମିଳିବ। ଏବେ ଷଡ଼ଭୁଜର ମଝିରୁ ଅଧାକରି ଭାଙ୍ଗିଦିଅ। ଏହି ଆୟତାକାର ଆକାରର ଉପର ପରସ୍ତଟିକୁ ଉପର ଆଡ଼କୁ ଖୋଲିଦିଅ। ଏବେ ବର୍ଗକ୍ଷେତ୍ରର ମଝିରୁ ଧରି ଏପରି ମୋଡ଼ିଦିଅ ଯେପରି ଉପରର ତ୍ରିଭୁଜ ଦୁଇଟିର ଖୋଲାପଟ ଦୁଇଟି ମିଶିଯିବ ଓ ତଳପଟେ ମଧ୍ୟ ସେହିପରି ତ୍ରିଭୁଜ ଦୁଇଟି ମିଶିଯିବ। ଏଥର ବାକ୍ସଟି ଓଲଟିଯିବ।















# ଡାକ ତରାଜୁ

ଦୋକାନରେ ୫୦ ଗ୍ରାମରୁ ଆରମ୍ଭ କରି ୧ କିଲୋଗ୍ରାମ ଯାଏଁ ଓଜନର ବଟକରା ଥାଏ । କିନ୍ତୁ ୧ ଗ୍ରାମ, ୨ ଗ୍ରାମ, ୫ ଗ୍ରାମ, ୧୦ ଗ୍ରାମ ଭଳି ଛୋଟ ଓଜନ ସାଧାରଣତଃ ଦୋକାନୀ ପାଖରେ ନଥାଏ । ଆମେ ଘରେ ଏପରି ଏକ ନିକିତି ତିଆରି କରିବା, ଯେଉଁଥିରେ ୧ ଗ୍ରାମଠାରୁ ଆରମ୍ଭ କରି ୧୦ ଗ୍ରାମ ଯାଏଁ ଓଜନ କରିହେବ ।

## କ'ଣ ଦରକାର:



- ପୁରୁଣା ପୋଷ୍ଟକାର୍ଡ଼, ଦୁଇଟି କାଗଜକ୍ଲିପ, ଗୋଟିଏ ଛୋଟ ନଟ୍, ସୂତା ଓ ଦଶପଇସିଠାରୁ ଆରମ୍ଭ କରି ଏକଟଙ୍କିଆ ଯାଏଁ ମୁଦ୍ରା

## କିପରି କରିବ



- ଗୋଟିଏ ପୁରୁଣା ପୋଷ୍ଟକାର୍ଡ଼ରୁ ୯ ସେ.ମି. ବର୍ଗର ଖଣ୍ଡେ କାଟ । ପୋଷ୍ଟକାର୍ଡ଼ର ଚଉଡ଼ା ୯ ସେ.ମି. । ତେଣୁ ତା'ର ଲମ୍ବପଟରେ ଚଉଡ଼ା ମାପ ଦେଇ କାଟିଦେଲେ ସେହି ମାପର ବର୍ଗ ମିଳିଯିବ ।
- ବର୍ଗକ୍ଷେତ୍ରର ଦୁଇ ବିପରୀତ କୋଣକୁ ଯୋଗ କରି ଗୋଟିଏ କର୍ଣ୍ଣ ଟାଣ ।
- କର୍ଣ୍ଣର ଗୋଟିଏ ମୁଣ୍ଡରେ କୋଣରୁ ୧.୫ ସେ.ମି. ଛାଡ଼ି ଗୋଟିଏ କଣା କର ଓ ଏହି କୋଣର ଦୁଇ ପାଖରେ ଥିବା ଯେକୌଣସି କୋଣରେ ସେହିପରି ୧.୫ ସେ.ମି. ଛାଡ଼ି ଗୋଟିଏ କଣା କର ।



- ସେହି ଦୁଇଟି କଣା ଭିତରେ ଦୁଇଟି କାଗଜକ୍ଲିପ ଲଗାଇଦିଅ । ଡାହାଣ ପଟରେ ଥିବା କାଗଜକ୍ଲିପ୍‌ରେ

ଓଜନ ପାଇଁ ଜିନିଷ ରଖାଯିବ ଏବଂ ଅନ୍ୟଟିରେ ଓଜନ ପାଇଁ ସୂତା ଝୁଲିବ।



- ପୋଷ୍ଟକାର୍ଡ଼ଟିକୁ ଏପରି ଭାବରେ ରଖ ଯେ ଗୋଟିଏ କଣା ଉପରପଟକୁ ଏବଂ ଅନ୍ୟ କଣାଟି ତାହାର ଡାହାଣପଟକୁ ରହିବ।
- କାର୍ଡ଼ର ବାଁ କୋଣରେ ଗୋଟିଏ ପୁରୁଣା ପଚାଶ ପଇସି ଅଠା ମାରି ଲଗାଇଦିଅ।
- ପ୍ରାୟ ୧୫ ସେ.ମି. ଲମ୍ବର ସୂତା ନେଇ ସେଥିରେ ନଟ୍‌ଟିଏ ବାନ୍ଧି ଉପର କାଗଜକ୍ଲିପରେ ଝୁଲାଇଦିଅ। ନଟ୍ ଯୋଗୁଁ ସୂତାଟି ସବୁବେଳେ ସିଧା ଝୁଲିବ। ସୂତା ସିଧାରେ କାର୍ଡ଼ରେ ଚିହ୍ନଦିଅ।



- ଏହାପରେ ତୁମେ ଡାହାଣ ପାଖର କ୍ଲିପ୍‌ରେ ବିଭିନ୍ନ ପଇସା ଖଞ୍ଜି ନଟ୍‌କୁ ଓହଳାଇ ଦିଅ ଏବଂ ଯେଉଁଠାରେ କାର୍ଡ଼ରେ ମିଶୁଛି ସେଠାରେ ଚିହ୍ନଦିଅ।
- ଏହିପରି ବିଭିନ୍ନ ଓଜନର ଚିହ୍ନ ସବୁ ପୋଷ୍ଟକାର୍ଡ଼ରେ ହୋଇଯିବ। ସେଗୁଡ଼ିକ ଏହିଭଳି ହେବ,



୧୦ ପଇସା = ୧ ଗ୍ରାମ

୨୦ ପଇସା = ୨ ଗ୍ରାମ

୨୫ ପଇସା = ୨.୫ ଗ୍ରାମ

୫୦ ପଇସା = ୫ ଗ୍ରାମ

୧ ଟଙ୍କା = ୧୦ ଗ୍ରାମ

- ଏହିପରି ତୁମେ ବିଭିନ୍ନ ପଇସାରୁ ବିଭିନ୍ନ ଓଜନ ପାଇପାରିବ। ଏବେ ତୁମର ନିକିତିଟି ହୋଇଗଲା।






# ଘୂରନ୍ତା ଚକ

**ମେଳା, ଯାତ୍ରା ଆଦିରେ ଗୋଟିଏ ସୂତାକୁ ଟାଣି ଟାଣି ଚକ୍ରି ଘୂରାଉଥିବାର ଖେଳନାଟିଏ ଆମେ ଦେଖିଥିବା । ଗୋଟିଏ ଫିଲ୍ମ ଡବାରେ ଆମେ ସେହିଭଳି ଖେଳନାଟିଏ ତିଆରି କରି ଖେଳିବା ।**



## କ'ଣ ଦରକାର

- ଫିଲ୍ମ ଡବା, ସାଇକେଲ ସ୍ପୋକ୍, ଦୁଇଟି ନଟ୍, ରବରଠିପି, ସୂତା

## କିପରି କରିବ

- ଫିଲ୍ମ ଡବାର ତଳପଟେ ୫ ମି.ମି. ଓସାରର କଣାଟିଏ କର । ଖୋଲାମୁହଁ ପାଖରେ ଡବାର ଧାରରେ ଉପରୁ ୧ ସେ.ମି. ତଳକୁ ଦୁଇଟି କଣା କର । କଣାରେ ଯେପରି ସାଇକେଲ ସ୍ପୋକ୍ ପଶିପାରିବ ।
- ରିଲ୍ ଡବାର ଘୋଡ଼ଣୀ ମଝିରେ ଗୋଟିଏ କଣା କର । ସାଇକେଲ ସ୍ପୋକ୍‌ରୁ ଘାଇ ଥିବା ପଟରୁ ୭ ସେ.ମି. ଲମ୍ବର ଖଣ୍ଡେ କାଟ । ସେହିପଟେ ଘୋଡ଼ଣୀଟିକୁ ଦୁଇଟି ନଟ୍ ଦ୍ୱାରା ଚାପି ଲଗାଇଦିଅ । ରବର ଠିପିର ମଝିରେ କଣାକର । ଘୋଡ଼ଣୀ ଲାଗିଥିବା ଅଖଟିକୁ ଡବାର କଣା ଦୁଇଟି ଭିତରେ ପୂରାଅ । ଏହାର ଆରମୁଣ୍ଡରେ ରବର ଠିପିକୁ ଲଗାଇଦିଅ ।
- ବର୍ତ୍ତମାନ ଅଖ ମଝିରେ ପ୍ରାୟ ୫୦ ସେ.ମି. ଲମ୍ବ ସୂତାର ଗୋଟିଏ ମୁଣ୍ଡକୁ ବାନ୍ଧି ଗୁଡ଼ାଇଦିଅ । ଅନ୍ୟ ମୁଣ୍ଡ ଡବାର ତଳପଟେ ହୋଇଥିବା କଣା ଦେଇ ତଳକୁ ଟାଣ । ସୂତା ଅଗଟି ପୁଣି ଭିତରକୁ ନଚାଲିଯିବା ପାଇଁ ଏଥିରେ ଛୋଟ ରବର ଟୁକୁଡ଼ାଟିଏ ବାନ୍ଧିଦିଅ । ବର୍ତ୍ତମାନ ରବର ଟୁକୁଡ଼ାଟିକୁ ଧରି ଟାଣିଲେ ଚକ ଘୂରିବ ।

# ଗୋଳିକଲମର ମଡେଲ

ଆଜିକାଲି ସମସ୍ତେ ଗୋଳିକଲମରେ ଲେଖୁଛନ୍ତି । ଆମେ ସେହିଭଳି କଲମଟିଏ ତିଆରି କରି ଲେଖିପାରିବା ଓ ସେ କଲମ କିପରି କାମ କରେ ବୁଝିପାରିବା ।

*କ'ଣ ଦରକାର:*

- ସରୁମୁହାଁ ପ୍ଲାଷ୍ଟିକ ବୋତଲ, କାଚବାଟି, କାଳି



*କିପରି କରିବ*

- ସରୁମୁହାଁ ପ୍ଲାଷ୍ଟିକ ବୋତଲର ଉପରଆଡୁ ଖଣ୍ଡେ କାଟିଦିଅ । ଠିକ ଖାପ ଖାଉଥିବା ଭଳି ଗୋଟିଏ ଛୋଟ କାଚଗୋଳି ଏହାର ମୁହଁରେ ରଖ । କାଚଗୋଳିଟି ଯେପରି ସହଜରେ ଘୂରିପାରିବ, କିନ୍ତୁ ବୋତଲ ଭିତରକୁ ପଶି ଯାଉନଥିବ ।



- ଏଥର ବୋତଲଟିକୁ ତଳମୁହାଁ କରି ଖଣ୍ଡିଏ କାଗଜ ଉପରେ ରଖ । ବୋତଲକୁ ଅଳ୍ପ ଚିପି ଧରିଲେ କାଚଗୋଳିଟି ତା'ର ମୁହଁକୁ ପୂରା ବନ୍ଦ କରି ରଖିବ ।
- ଏବେ ବୋତଲର ପଛଆଡରୁ ଅଳ୍ପ କାଳି ପୂରାଅ । ବୋତଲ ଉପରୁ ଚାପ କମାଇ ତଳମୁହାଁ ବୋତଲ ସହିତ ଗୋଳିଟିକୁ କାଗଜ ଉପରେ ଚଳାଅ ।



- ଦେଖିବ କାଳି ଅଳ୍ପ ଅଳ୍ପ ବୋହିଆସିବ ଓ କାଗଜରେ ଗାର ପକାଇବ । କାଳିରେ କିଛି ଅଠା ମିଶାଇ ମୋଟା ପତଳା କରି ଦେଖ କେଉଁଥିରେ ଭଲ ଲେଖିହେଉଛି ।

# ନଳକୂଅ

ନଳକୂଅରେ ପାଣି ଉଠିବା ଆମେ ସମସ୍ତେ ଦେଖିଥିବା । ଗୋଟିଏ ଛୋଟ ମଡ଼େଲ ତିଆରି କରି ଏହା କିପରି କାମ କରେ ଦେଖିବା ।

*କ'ଣ ଦରକାର:*

- ସ୍କେଚ କଲମର ପ୍ଲାଷ୍ଟିକନଳୀ, ଖାଲି ରିଫିଲ, ସୂତା, ଛୋଟ ଲୁହାବଲ (ସାଇକେଲ ବଲ)

*କିପରି କରିବ*

- ସ୍କେଚ୍ କଲମର ନଳୀରେ ଉପର (ଚଉଡ଼ା ମୁହଁ ପଟରୁ) ଦୁଇ ସେ.ମି. ଛାଡ଼ି କଣା କର । (ଗୋଟିଏ ଗରମ ଛୁଞ୍ଚି ଫୋଡ଼ି କଣା କରିପାରିବ) । ଯେପରି କଣାରେ ଖଣ୍ଡିଏ ରିଫିଲ ଟୁକୁଡ଼ା ଲାଗି ରହିପାରିବ ।
- ଗୋଟିଏ ପୁରୁଣା ରିଫିଲରୁ ୨ ସେ.ମି. ଲମ୍ବର ଟୁକୁଡ଼ା କାଟି ରଖି ଦେଇ ବାକି ଖଣ୍ଡକର ମୁଣ୍ଡରେ ସୂତା ବା ପତଳା କନା ଗୁଡ଼ାଇଦିଅ, ଯେପରି ରିଫିଲର ସେହି ମୁଣ୍ଡଟି ସ୍କେଚ କଲମ ଭିତରେ ଟିକିଏ ଚିପି ହୋଇ ଯିବାଆସିବା କରିବ ।
- ସ୍କେଚ୍ କଲମ ଭିତରେ ସାଇକେଲ ବଲଟିଏ ପକାଇଦିଅ । କଟା ହୋଇଥିବା ଛୋଟ ରିଫିଲ ଖଣ୍ଡକ ସ୍କେଚ୍ କଲମର ଉପରପଟେ ହୋଇଥିବା କଣାରେ ଲଗାଇଦିଅ ।
- ସୂତାଗୁଡ଼ା ହୋଇଥିବା ରିଫିଲଟିକୁ ନଳୀ ଭିତରେ ପୂରାଅ । ଗୋଟିଏ ଛୋଟ ଗିନାରେ ପାଣି ନେଇ ସ୍କେଚ କଲମର ଗୋଡ଼ିଆ ପଟକୁ ସେଥିରେ ରଖି ରିଫିଲଟିକୁ ତଳ ଉପର କଲେ କ'ଣ ହେଉଛି?



# ଭାକି ପମ୍ପ

କୂଅ ପୋଖରୀରୁ ପାଣି କାଢ଼ିବା ପାଇଁ କେତେ ପ୍ରକାରର ପମ୍ପ ବ୍ୟବହାର କରାଯାଏ । ନଳକୂଅରେ ପାଣି କାଢ଼ିବା ପାଇଁ ବିଦ୍ୟୁତ ଶକ୍ତି ଦରକାର ହୁଏନାହିଁ । ସେହିପରି ଆମେ ଏଠାରେ ଗୋଟିଏ ପମ୍ପ ତିଆରି କରି ପାଣି ଉଠାଇବା ।



*କ'ଣ ଦରକାର:*

- ଫିଲ୍ମ ଡବା ଦୁଇଟି, ପୁରୁଣା ସାଇକେଲ ଟ୍ୟୁବ ଖଣ୍ଡେ, ଖାଲି ରିଫିଲ, ସ୍କେଲ, ଛୁରୀ, କଇଁଚି, ଡେନ୍ଡ୍ରାଇଟ

*କିପରି କରିବ:*

- ଗୋଟିଏ ଫିଲ୍ମ ଡବାର ତଳପଟେ ଏକ ସେ.ମି. ଗୋଲେଇର କଣାଟିଏ କର ।
- ସେହିଭଳି ଆର ଡବାର ଖୋଳରେ ମଧ୍ୟ ଏକ ସେ.ମି. ଗୋଲେଇର କଣା କର ।
- ପୁରୁଣା ସାଇକେଲ ଟ୍ୟୁବରୁ ଦେଢ଼ ସେ.ମି. ଗୋଲେଇର ଦୁଇଟି ଚକି କାଟ । ଚକି ଦୁଇଟିର ଅଧା ଯାଏଁ ଅଠା ଲଗାଅ ଓ ତାକୁ କଣା ହୋଇଥିବା ଡବାର ତଳପଟେ ଲଗାଇଦିଅ ।
- ଆର ଚକିଟିକୁ କଣା ହୋଇଥିବା ଖୋଳର ଭିତର ପାଖରେ ଲଗାଅ ।
- କଣା ହୋଇନଥିବା ଡବାର ତଳୁ ପ୍ରାୟ ଏକ ସେ.ମି. ଉପରକୁ କଣାଟିଏ କର । ସେଥିରେ ୩ ସେ.ମି. ଲମ୍ବର ରିଫିଲ ଖଣ୍ଡକୁ ଅଧା ଯାଏଁ ପୂରାଅ ।

❁ ଏହି ଡବାରେ କଣା ହୋଇଥିବା ଢାଙ୍କୁଣୀଟି ଦେଇ ଡବା ବନ୍ଦ କରିଦିଅ ।

❁ ସାଇକେଲ ଟ୍ୟୁବରୁ ପ୍ରାୟ ୧୫ ସେ.ମି. ଲମ୍ବର ଗୋଟିଏ ନଳୀ କାଟ । ଏହି ଟ୍ୟୁବର ଗୋଟିଏ ମୁଣ୍ଡରେ ତଳକଣା ହୋଇଥିବା ଡବାଟି ପୂରାଅ । ଆରପଟେ କଣାଢାଙ୍କୁଣୀ ଥିବା ଡବାଟି ପୂରାଅ ।



❁ ଗୋଟିଏ ଜାଗାରେ ପାଣି ନେଇ ମୁହଁଖୋଲା ଡବାଟିକୁ ଗୋଟିଏ ହାତରେ ଧରି ସେଥିରେ ବୁଡ଼ାଅ । ଆର ହାତରେ ରିଫିଲଲଗା ଡବାଟି ଧରି ତଳ ଉପର କର । ଦେଖିବ କିଛିସମୟ ପରେ ରିଫିଲ ବାଟ ଦେଇ ପାଣି ବାହାରିବ । ତୁମର ପମ୍ପ ହୋଇଗଲା ।



## ପମ୍ପରୁ ପିଚକାରୀ

❁ ପମ୍ପର ମୁହଁଖୋଲା ଡବାର ଢାଙ୍କୁଣୀ ନିଅ ।

❁ ତା'ର ମଝିରେ ଗୋଟିଏ କଣା କର । ସେହି କଣାରେ ଗୋଟିଏ ସୋଡ଼ା ଷ୍ଟ୍ର ପୂରାଅ । ଢାଙ୍କୁଣୀର ଉପରକୁ ଯେପରି ଷ୍ଟ୍ରର ଅଧିକା ଅଂଶ ରହିବ । କଣାଟି ଏପରି ହେବା ଦରକାର ଯେପରି ସେଥିରେ ସୋଡ଼ା ଷ୍ଟ୍ରଟି ପୂରା ଲାଗିରହିବ । ଟିକିଏ ବି ଢିଲା ହେଲେ ପାଣି ଉଠିବନାହିଁ ।

❁ ଏଥର ଢାଙ୍କୁଣୀଟି ପମ୍ପର ତଳ (ଖୋଲାମୁହଁ) ଡବାରେ ଲଗାଇଦିଅ । ଏବେ ପମ୍ପଟିକୁ ଗୋଟିଏ ବୋତଲ ଭିତରେ ରଖି ଆଗଭଳି ଉପର ଡବାଟି ଉପରତଳ କର । କ'ଣ ହେଉଛି ଲକ୍ଷ୍ୟ କର ।





# ଉଡ଼ନ୍ତା ମାଛ

ଗୋଟିଏ କାଗଜକୁ କାଟି ଛକି ପକାଇଦେଲେ ତାହା ଗୋଟିଏ ମାଛ ହୋଇଯିବ । ଉପରୁ ଛାଡ଼ିଲେ ତାହା ଘୂରି ଘୂରି ତଳକୁ ଖସିବ ।



*କ'ଣ ଦରକାର:*

- ପୁରୁଣା ପୋଷ୍ଟକାର୍ଡ଼, କଇଁଚି

*କିପରି କରିବ:*





- ଗୋଟିଏ ପୁରୁଣା ପୋଷ୍ଟକାର୍ଡ଼ରୁ ପ୍ରାୟ ୨ ସେ.ମି. ଚଉଡ଼ା ଓ ୯ ସେ.ମି. ଲମ୍ବାର ଖଣ୍ଡେ ପଟି କାଟ। ପୋଷ୍ଟକାର୍ଡ଼ର ଚଉଡ଼ା ୯ ସେ.ମି.। ତେଣୁ ଚଉଡ଼ା ପଟରେ ୨ ସେ.ମି.ର ପଟି କାଟିଦେଲେ ହେବ।
- ଚଉଡ଼ା ପଟରେ ବାଁ ଧାରରୁ ୨ ସେ.ମି. ଛାଡ଼ି ଅଧା ଯାଏଁ କାଟିଦିଅ। କାଗଜଟିକୁ ବୁଲାଇଦିଅ ଯେପରି ଉପରର କଟା ଧାର ତଳକୁ ହୋଇଯିବ।



- ଏବେ ପୁଣିଥରେ ବାଁ ଧାରରୁ ୨ ସେ.ମି. ଛାଡ଼ି କାଟିଦିଅ। ଦେଖିବ କଟା ଦୁଇଟି କାଗଜର ଦୁଇ ଓଲଟା ପଟରେ ରହିବ।
- କାଗଜଟିକୁ ବୁଲାଇ ୪ ଭଳି ଆକୃତି କର ଓ କଟା ଦୁଇଟିକୁ ନିଜ ନିଜ ଭିତରେ ଖଞ୍ଜିଦିଅ। ଉଡ଼ନ୍ତା ମାଛ ହୋଇଗଲା। ଏବେ ଏହାକୁ ଉପରୁ ଧରି ତଳକୁ ଫିଙ୍ଗିଲେ ତାହା ବୁଲି ବୁଲି ତଳକୁ ଖସିବ।



# ହେଲିକପ୍ଟର

**ଉଡ଼ନ୍ତା ମାଛ ଭଳି କାଗଜପଟିଟିଏ କାଟି ହେଲିକପ୍ଟର ମଧ୍ୟ ତିଆରି କରିହେବ ।**

*କ'ଣ ଦରକାର:*

- ପୁରୁଣା ପୋଷ୍ଟକାର୍ଡ଼, କଇଁଚି, କାଗଜ କ୍ଲିପ୍



*କିପରି କରିବ:*

- ପୁରୁଣା ପୋଷ୍ଟକାର୍ଡ଼ରୁ ପ୍ରାୟ ୧୪ ସେ.ମି. ଲମ୍ବ ଓ ୩ ସେ.ମି. ଚଉଡ଼ାର ଖଣ୍ଡେ ପଟି କାଟ । ପୋଷ୍ଟକାର୍ଡ଼ର ଲମ୍ବ ହେଉଛି ୧୪ ସେ.ମି. ଓ ଚଉଡ଼ା ୯ ସେ.ମି. । ତେଣୁ ଲମ୍ବ ଭାବରେ ପୋଷ୍ଟକାର୍ଡ଼ଟିକୁ ତିନିଭାଗ କରି କାଟିଦେଲେ ଏହି ମାପର ତିନିଖଣ୍ଡ କାଗଜପଟି ମିଳିଯିବ ।





- କାଗଜର ଚଉଡ଼ାପଟେ ପଟିଟିକୁ ତିନିଭାଗ କରି ପ୍ରଥମ ଭାଗକୁ ଦୁଇ ତୃତୀୟାଂଶ ଯାଏଁ କାଟ । ସେହିଭଳି କାଗଜଟିକୁ ବୁଲାଇଦେଇ ଆଗଭଳି ଦୁଇ ତୃତୀୟାଂଶ ଯାଏଁ କାଟ, ଯେପରି କଟା ଦୁଇଟି କାଗଜର ଓଲଟା ପଟେ ରହିବ । ଦୁଇ ଖୋଲାମୁଣ୍ଡକୁ ଏକାଠି ଧରି ଯୋଡ଼ିଦିଅ ଓ ତଳପଟେ କିଛି ଓଜନ ଦେବା ପାଇଁ କାଗଜକୁ ଅଳ୍ପ ମୋଡ଼ିଦେଇ କାଗଜକ୍ଲିପ୍‌ଟିଏ ଲଗାଇଦିଅ । ତୁମର ହେଲିକପ୍ଟର ତିଆରି ହୋଇଗଲା ।



- ଉଚ୍ଚ ଜାଗାରେ ଛିଡ଼ା ହୋଇ ଏହାକୁ ତଳକୁ ଛାଡ଼ିଦିଅ । ଦେଖ କିପରି ସେ ପବନ କାଟି ତଳକୁ ଖସୁଛି ।



# ଲୁପ୍ ଗ୍ଲାଇଡ଼ର

କାଗଜକୁ ଭାଙ୍ଗି ରକେଟ କରି ଉଡ଼ାଇବା ପାଇଁ ଭାରି ମଜା ଲାଗେ । ସେହିଭଳି କାଗଜର ଆଉ ଗୋଟିଏ ପ୍ରକାରର ଗ୍ଲାଇଡ଼ର କରି ଏଥର ଉଡ଼ାଇବା ।



*କ'ଣ ଦରକାର:*

- ଡ୍ରଇଁସିଟ୍, ସୋଡ଼ା ଷ୍ଟ୍ର, ଅଠା, ସେଲୋଟେପ୍, କଇଁଚି

*କିପରି କରିବ:*

- ଗୋଟିଏ ଡ୍ରଇଁସିଟ୍‌ରୁ ପ୍ରାୟ ୨ x ୧୬ ସେ.ମି. ଓ ୨ x ୧୦ ସେ.ମି. ଲମ୍ବର ଦୁଇଖଣ୍ଡ କାଗଜପଟି କାଟ ।
- କାଗଜପଟିଗୁଡ଼ିକର ଦୁଇ ମୁଣ୍ଡକୁ ଯୋଡ଼ିଦିଅ ଯେପରି ଦୁଇଟି ଗୋଲ ଚକ ହୋଇଯିବ ।
- ୧୫ ସେ.ମି. ଲମ୍ବର ଗୋଟିଏ ସୋଡ଼ା ଷ୍ଟ୍ର ନିଅ । ଗୋଲ ଚକ ଦୁଇଟିକୁ ଷ୍ଟ୍ରର ଦୁଇମୁଣ୍ଡରେ ସେଲୋଟେପ୍ ଦେଇ ଲଗାଇଦିଅ । ଚକ ଦୁଇଟି ନଳୀର ଦୁଇ ମୁଣ୍ଡରେ କିନ୍ତୁ ଗୋଟିଏ ପଟେ ରହିବା ଦରକାର ।
- ଏବେ ଗ୍ଲାଇଡରଟି ତିଆରି ହୋଇଗଲା । ଛୋଟ ଗୋଲଟିକୁ ଆଗଆଡକୁ ରଖି ଫିଙ୍ଗିଦେଲେ ତାହା ଧୀରେ ଧୀରେ ତଳକୁ ଖସିବ ।

# ଗ୍ଲାଇଡ଼ର

ଟୁକୁଡ଼ା କାଗଜ ଖଣ୍ଡେ ଉପରକୁ ପକାଇଦେଲେ ତାହା ଏଣେତେଣେ ହୋଇ ତଳକୁ ଖସେ । କିନ୍ତୁ ତାକୁ ଭାଙ୍ଗି ଦେଲେ ତାହା ସିଧା ହୋଇ ଉଡ଼େ ।

**କ'ଣ ଦରକାର:**



❁ ଡ୍ରଇଁସିଟ୍, ପେନ୍ସିଲ୍

**କିପରି କରିବ**

❁ ପ୍ରାୟ ୩୦ x ୨୦ ସେ.ମି. ଲମ୍ବର ଗୋଟିଏ କାଗଜ ନିଅ । ତଳୁ ୧ ସେ.ମି ଛଡ଼ାରେ ଗାର ପକାଇଦିଅ । ଏହି ଗାର ଉପରେ କାଗଜଟିକୁ ଭାଙ୍ଗିଦିଅ । ସାମନାପଟୁ ଆରମ୍ଭ କରିବ ।



❁ ପ୍ରଥମେ ମଝିରୁ ଭାଙ୍ଗିଦିଅ । ତା'ପରେ ଗାର ଉପରେ କାଟିଦିଅ ।

❁ ଏବେ କାଗଜଟି ଖୋଲିଦିଅ ଓ ଲାଞ୍ଜଟି ତଳକୁ ଭାଙ୍ଗିଦିଅ । ଡେଣାର ଅଗଟି ଉପରକୁ ଭାଙ୍ଗିଦିଅ ।



❁ ଚିତ୍ରରେ ଦେଖାହୋଇଥିବା ଭଳି ମୋଡ଼ିକରି ଗ୍ଲାଇଡ଼ରଟିକୁ ପୂରାକର।।

❁ ଗୋଟିଏ ଛୋଟ ଅଠାକାଗଜ ଲଗାଇ ତାକୁ ଯୋଡ଼ିଦିଅ ଯେପରି ତାହା ସେହି ଆକାରରେ ରହିବ । ଏବେ ତୁମର ଉଡ଼ାଜାହାଜଟି ଉଡ଼ିବା ପାଇଁ ପ୍ରସ୍ତୁତ ।



# ହାତଗଢ଼ା ଖେଳନା

ପିଲା ପାଇଁ ଖେଳନା ସମ୍ପର୍କିତ ସବୁଠାରୁ ଭଲ କାମ ହେଉଛି ତାହାକୁ ଭାଙ୍ଗିବା। ତାହାର ଠିକ୍ ପଛକୁ ରହିବ ଖେଳନା ତିଆରି କରିବା। ସହଜରେ, ଆଉ ଅଳ୍ପ ବା ବିନା ଖର୍ଚ୍ଚରେ, ଗଢ଼ିଭାଙ୍ଗି ହେଉଥିବା ଅନେକ ପ୍ରକାରର ଖେଳନା ପୃଥିବୀର ସବୁ ଅଞ୍ଚଳରେ ପିଲାଙ୍କର ଖେଳସାଥି ହୋଇ ରହିଛି।

ଏହି ଖେଳନାଗୁଡ଼ିକର ଗଠନ ଓ କାମ ଅତି ସରଳ। ଅନେକ ସମୟରେ ସେଗୁଡ଼ିକ ଫିଙ୍ଗା ହୋଇଥିବା ଜିନିଷରେ ଏବଂ ବିନା ଖର୍ଚ୍ଚରେ ଗଢ଼ା ହୋଇଥାଏ। କିନ୍ତୁ ଏହାର ଅର୍ଥ ନୁହେଁ ଯେ ଏହି ଖେଳନା ସବୁ ଦୋକାନରେ ମିଳୁଥିବା ଦାମିକା, କାରଖାନା ତିଆରି ଖେଳନାଠାରୁ ଗୁଣରେ କିଛି କମ୍। ବରଂ ଏହି ହାତଗଢ଼ା ଖେଳନାଗୁଡ଼ିକ କାରଖାନା ତିଆରି ଖେଳନାଠାରୁ ବେଶୀ ଆଗୁଆ ହୋଇପାରେ।

### ସୃଜନଶୀଳତାର ମୂଳଦୁଆ

ଏହି ଖେଳନାଗୁଡ଼ିକର ଗୋଟିଏ ବଡ଼ ଗୁଣ ହେଉଛି ଯେ ସେଗୁଡ଼ିକ ପିଲାକୁ ବିଜ୍ଞାନର ଧାରାରେ କାମ କରିବାକୁ ଶିଖାଇଥା'ନ୍ତି। ଖେଳନାଗୁଡ଼ିକୁ ତିଆରି କରିବା ଓ ଖେଳରେ ଲଗାଇବା ବେଳେ ସେଗୁଡ଼ିକର ଦୋଷ ଓ ଦୁର୍ବଳତାକୁ ସହଜରେ ଧରିହୁଏ। କାରଣ ଏହି ଖେଳନା ସବୁକୁ ନିର୍ଦ୍ଦିଷ୍ଟ ଧାରାରେ ନ କରିଲେ ତାହା ଆଦୌ କାମ କରିବନାହିଁ କିମ୍ବା ଭଲ ଭାବରେ କାମ ଦେବନାହିଁ। ଯଦି ସେଭଳି କିଛି ଅସୁବିଧା ଆସେ, ତେବେ ପିଲାମାନେ ନିଜେ ନିଜେ କିଛି ଅଦଳ ବଦଳ କରି ସେଗୁଡ଼ିକୁ ସୁଧାରି ନେଇପାରନ୍ତି। ଯେପରି କାଗଜର ପେଁକାଳୀରୁ ସ୍ୱର ନ ବାହାରିଲେ ପିଲାମାନେ କୁତୂହଳୀ ହୋଇ ଚିନ୍ତା କରନ୍ତି – ଏହାର ତିଆରି ଠିକ୍ ଅଛି ତ? ଏହିଭଳି ଫୁଙ୍କିବା ଠିକ୍ ତ? ଏହିଭାବରେ ପିଲାମାନେ ପରଖ କରିବାକୁ ଶିଖନ୍ତି ଏବଂ ସୃଜନଶୀଳତାର ମୌଳିକ ଧାରଣା ପାଇପାରନ୍ତି।

### ନିଜନିଜଠୁ ଶିଖିବା

ଏହି ଖେଳନାଗୁଡ଼ିକୁ ପିଲାମାନେ ନିଜେ ଗଢ଼ନ୍ତି। ତାହା ସେମାନେ ଖେଳସାଥି, ବଡ଼ପିଲା ବା ବୟସ୍କଙ୍କଠାରୁ ଶିଖିଥା'ନ୍ତି। ସେମାନେ ନିଜେ ପୁଣି ଅନ୍ୟମାନଙ୍କୁ ଶିଖାନ୍ତି ଏବଂ ନିଜେ ଆହୁରି ବେଶୀ ଶିଖନ୍ତି। କେବେ ଏସବୁର ତିଆରି ଓ କାମ ବିଷୟରେ ସେମାନେ ବଡ଼ମାନଙ୍କୁ ପଚାରି ବୁଝନ୍ତି।

## ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଅଙ୍କୁର

ଏହା କୁହାଯାଇପାରେ ଯେ ପିଲାମାନଙ୍କୁ ବିଜ୍ଞାନ ଓ ପ୍ରଯୁକ୍ତି ବିଦ୍ୟାର ଧାରଣା ଦେବାରେ ଆଉ କେଉଁ ଖେଳନା ଏହି ହାତଗଢ଼ା ଖେଳନାଗୁଡ଼ିକ ଭଳି ଫଳପ୍ରଦ ହୋଇପାରିବ ନାହିଁ। ଏସବୁର ମାଧ୍ୟମରେ ପିଲା ଅତି ସହଜରେ ବିଜ୍ଞାନର, ବିଶେଷ କରି ପଦାର୍ଥ ବିଜ୍ଞାନରର, ମୂଳତତ୍ତ୍ୱ ଜାଣିବାକୁ ପାଏ।

ଅବଶ୍ୟ ବିଭିନ୍ନ ବିଜ୍ଞାନ ଉପକରଣ ଏବଂ ଚାରିପାଖର ପରିବେଶରୁ ଉଦାହରଣ ଜରିଆରେ ବିଜ୍ଞାନର ମୂଳତତ୍ତ୍ୱକୁ ବୁଝାଇ ଦିଆଯାଇପାରେ। ତେଣୁ ଏହିସବୁ ଖେଳନା ଜରିଆରେ ବିଜ୍ଞାନକୁ ଜାଣିବାର ବିଶେଷତା କ'ଣ? ବଡ଼ କଥା ହେଉଛି ଯେ ସହଜରେ ତିଆରି କରି ହେଉଥିବା ଏବଂ ଖେଳରେ ଲାଗି ପାରୁଥିବା ଏହି ଖେଳନାଗୁଡ଼ିକ ବିଜ୍ଞାନର ଧାରଣାକୁ ଅଧିକ ସ୍ପଷ୍ଟ କରିଦିଏ। ଶିଖିବା କାମଟି ଖେଳ ସହିତ ନିବିଡ଼ ଭାବରେ ମିଶିଯାଏ ଏବଂ ଗୋଟିଏ ଖୁସିଭରା ଅନୁଭୂତି ହୋଇଯାଏ।

ଏହି ଖେଳନାଗୁଡ଼ିକ ପିଲାକୁ ପ୍ରଯୁକ୍ତି ବିଦ୍ୟାର ମୂଳକଥା ଶିଖାନ୍ତି। ଆହୁରି ମଧ୍ୟ ଶିଖାନ୍ତି –

- ପାଦ ପାଦ କରି ଯୋଜନା ଓ ତିଆରି କରିବା;
- କଇଁଚି, ଛୁରୀ, ହାତୁଡ଼ି ଆଦି ଭଳି ସାଧାରଣ ହତିଆରକୁ ନେଇ କିପରି କାମ କରିବା;
- କେତେ ପ୍ରକାରର ଜିନିଷକୁ କାମରେ ଲଗାଇବା ଫଳରେ ସେସବୁର ଗୁଣଧର୍ମ ଜାଣିବା;
- ମାପଚୁପର ମୌଳିକ ଧାରଣା ପାଇବା ଓ ସଠିକ୍ ମାପର ଗୁରୁତ୍ୱ ବୁଝିବା;
- 'ଆଂଶିକ ତିଆରି ଓ ଯୋଡ଼େଇ' (ଅନେକଗୁଡ଼ିଏ ଅଂଶ ଥିବା ଜିନିଷକୁ କିପରି ବିଭିନ୍ନ ଖଣ୍ଡ ବା ଅଂଶରେ ତିଆରି କରିବା ଏବଂ ଶେଷରେ ସେଗୁଡ଼ିକୁ ଯୋଡ଼ି କାମଟିକୁ ପୂରା କରିବା) ଧାରାର ଧାରଣା ପାଇବା।
- କାମଟିର ମୂଲ୍ୟାୟନ କରିବା ଏବଂ ତାହାକୁ ଉନ୍ନତ କରିବାର ବ୍ରାଟ ଖୋଜିବା।

## ଏହି ଖେଳନାଗୁଡ଼ିକ ନିରାପଦ କି?

ସାଧାରଣ ଭାରତୀୟ ଘରର ପରିବେଶକୁ ଚାହିଁଲେ ଏହି ଖେଳନା ସବୁ ନିରାପଦ। ପିଲାମାନେ ସାଧାରଣତଃ ଛୁରୀ, କଇଁଚି, ଛୁଞ୍ଚି ଆଦି ଲଗାଇ ଫିଙ୍ଗା ଯାଇଥିବା ଜିନିଷରୁ ଏଗୁଡ଼ିକ ତିଆରି କରନ୍ତି। ଏସବୁ ହତିଆରରେ ଖେଳନା ତିଆରି କରିବା ଫଳରେ କିପରି ସାବଧାନ ହୋଇ କାମ କରିବାକୁ ହୁଏ, ତାହା ପିଲା ଶିଖିପାରେ। ବଢ଼ିବା ପ୍ରକ୍ରିୟାର ଏହା ଏକ ଗୁରୁତ୍ୱପୂର୍ଣ୍ଣ ଦିଗ।

ତଥାପି କେତେଗୁଡ଼ିଏ ଖେଳନା ତିଆରିରେ କିଛି ମାତ୍ରାରେ ବିପଦ ରହିଛି। ଯେପରି କିଛି ଖେଳନା ଗଢ଼ିବା ପାଇଁ ବ୍ଲେଡ୍ ଦରକାର ହୁଏ ବା ତାହା ଧନୁଶରର ରୂପ ନିଏ। ଏଭଳି ଜାଗାରେ ଶିକ୍ଷକ ବା ଅଭିଭାବକ ଦୁର୍ଘଟଣା ବିଷୟରେ ପିଲାକୁ ଚେତାଇ ଦେବା ଦରକାର। କିନ୍ତୁ ବେଶୀ

ନଡରାଇ ସାବଧାନ ହୋଇ ହତିଆର ବ୍ୟବହାର କରିବାକୁ ଉତ୍ସାହିତ କରିବା ମଧ୍ୟ ଉଚିତ।

*ଏହି ଖେଳନାଗୁଡ଼ିକ ଭାରତୀୟ କି?*

ଏହାର ଉତ୍ତର ହଁ ଏବଂ ନାହିଁ ହୋଇପାରେ। ହଁ – କାରଣ ଏହି ଖେଳନାଗୁଡ଼ିକ ସ୍ଥାନୀୟ ଭାବରେ କରାଯାଏ। ନାଁ – କାରଣ ଏହିଭଳି କେତେ ଖେଳନା ବିଭିନ୍ନ ଦେଶରେ ରହିଛି। ଯେପରି ପୃଥିବୀର ସବୁ ଦେଶର ପିଲାମାନେ ପବନ ଚକ୍ରୀ ତିଆରି କରନ୍ତି ଏବଂ ସେଥିରେ ଖେଳନ୍ତି। କିନ୍ତୁ ସିଲେଇ କଳ ଭଳି କିଛି ଖେଳନା ନିର୍ଦ୍ଦିଷ୍ଟ ଭାବେ ଭାରତୀୟ। ସତରେ ଭାରତ ଭଳି ଆଉ କେଉଁ ଦେଶରେ ଏତେ ପ୍ରକାରର ଏଭଳି ଖେଳନା ଦେଖାଯାଏ ନାହିଁ।

ଏହି ଖେଳନାଗୁଡ଼ିକ ଭାରତୀୟ ସଂସ୍କୃତିର ଏକ ଅବିଚ୍ଛିନ୍ନ ଅଙ୍ଗ। ଖାଲି ଖେଳନା ନୁହେଁ ଟୋକେଇ, ମାଟିହାଣ୍ଡି ଓ କନା ଭଳି ଅନେକ ହାତତିଆରି ଘରକରଣା ଜିନିଷ ମଧ୍ୟ ଆମ ସଂସ୍କୃତି ସହିତ ଏହିଭଳି ଯୋଡ଼ା। ଏସବୁଥିରେ ଆଉ ଏକ ବିଶେଷ ଗୁଣ ରହିଛି ଯେ ଫିଙ୍ଗା ଜିନିଷକୁ ଆଉଥରେ କାମରେ ଲଗାଇ ଏସବୁ ତିଆରି କରାଯାଏ। ଏହି ଗୁଣ ମଧ୍ୟ ଭାରତୀୟ ସଂସ୍କୃତିର ଆଉ ଏକ ସାଧାରଣ ଦିଗ। ଆମର ସମୃଦ୍ଧ ଓ ବ୍ୟାପକ ପରିବେଶ ନୂଆ ଚିନ୍ତା ଓ ଧାରଣାର ବିକାଶ ପାଇଁ ଅନେକ ସୁଯୋଗ ଆଣିଥାଏ।

*ଆଗକୁ ରାସ୍ତା,*

ସମୟ କ୍ରମେ ଆମର ଚଳଣୀ ବଦଳୁଛି ଏବଂ ନୂଆ ସାମାଜିକ ଚିନ୍ତନ ଓ ପ୍ରଯୁକ୍ତି ବିଦ୍ୟା ଦେଖିବାକୁ ମିଳୁଛି। ଆଗରୁ ସହଜରେ ମିଳୁଥିବା ବାଉଁଶ କଣି ବା ନଡ଼ିଆ ଗୋଟକା ଏବେ ମିଳିବା କଷ୍ଟ। କିନ୍ତୁ ଆଜିର ନୂଆ ଧାରାର ଚଳଣୀରେ ଫଟୋ ଫିଲ୍ମ ଡବା, ସୂତା ଓ ଅନ୍ୟ ପ୍ରକାରର ରିଲ୍, ପ୍ଲାଷ୍ଟିକ ଡବା ଓ ମୁଣି ଆଦି ସବୁଦିନ ଫିଙ୍ଗା ଯାଉଛି। ଏସବୁକୁ ଲଗାଇ କେତେ ନୂଆ ଖେଳନା ମଧ୍ୟ ବାହାରିପାରିବ। ଏଭଳି ଚମତ୍କାର ନୂଆ ଖେଳନା ସବୁର ଧାରଣା କିଏ ଆଣିବ? ତାଲିମ ପାଇଥିବା ପରିଯୋଜନାକାରୀ, ବିଜ୍ଞାନୀ ଓ ଶିକ୍ଷକଙ୍କର ଏଥିରେ କି ଭୂମିକା ରହିବ?

ଶେଷରେ କୁହାଯାଇପାରିବ ଯେ ଖୁସି ଓ ସୃଜନଶୀଳତାର ଅନୁଭୂତି ଆଣିବା ହିଁ ଏହି ଖେଳନାଗୁଡ଼ିକର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ଦିଗ। ଆଜି ଏହି ଖେଳନା ତିଆରି କରୁଥିବା ପିଲାମାନେ ହେଉଛନ୍ତି ଭବିଷ୍ୟତର ବିଜ୍ଞାନୀ, ଇଞ୍ଜିନିୟର ଓ ପରିଯୋଜନାକାରୀ। ଆମେ ଆଶା କରୁଛୁ ଯେ ଯୁଗ ଯୁଗର ଏହି ସରଳ କିନ୍ତୁ ଚମତ୍କାର ଖେଳନାଗୁଡ଼ିକ ଅନେକ ଲୋକଙ୍କୁ ଆଗକୁ ବାଟ କଢ଼ାଇ ଚାଲିବ। ତାହା ହେବ 'ଅସାଧାରଣ' ଖେଳନାଗୁଡ଼ିକୁ ରୂପ ଦେଇଥିବା 'ସାଧାରଣ' ଲୋକଙ୍କ ପାଇଁ ଏକ ବିଶେଷ ଅର୍ଘ୍ୟ।

(ସୁଦର୍ଶନ ଖାନ୍ନା ଲେଖିଥିବା *ଭାରତୀୟ ଖେଳନା ତିଆରିର ମଜା* ବହିର ଉପକ୍ରମର ଛାୟାରେ)

ମଡ଼େଲ କାହିଁକି ତିଆରି କରିବା ?

ପିଲାଙ୍କ ଆଖିର ଝଲକ ଦେଖିବା ପାଇଁ ।

ମନର ଚିନ୍ତାକୁ ହାତରେ କରି ଦେଖାଇବା ପାଇଁ ।

କୌଣସି ତତ୍ତ୍ୱକୁ ପରୀକ୍ଷା କରି ଭଲ ଭାବରେ ବୁଝିବା ପାଇଁ ଓ କାମରେ ଲଗାଇବା ପାଇଁ ।

# ସୃଜନିକାର ଅନ୍ୟ ବହି

| | | |
|---|---|---|
| ୧. | କାଗଜ ଭଙ୍ଗାର ମଜା | ୧୨.୦୦ |
| ୨. | କାଗଜରୁ ଆକୃତି | ୨୦.୦୦ |
| ୩. | କାଗଜ ଭଙ୍ଗାରୁ ଜ୍ୟାମିତି | ୨୦.୦୦ |
| ୪. | ଗଣିତ କୁହୁକ | ୧୨.୦୦ |
| ୫. | ଆମ ମନର ଗୀତ | ୧୨.୦୦ |
| ୬. | ପ୍ରଥମିକ ଶିକ୍ଷାପଦ୍ଧତି | ୧୫.୦୦ |
| ୭. | ଗଛବଇଦ | ୧୫.୦୦ |
| ୮. | ବିଜ୍ଞାନପହଲି | ୮.୦୦ |
| ୯. | ଚନ୍ଦ୍ର ଅଭିଯାନ | ୫.୦୦ |
| ୧୦. | କାହିଁକି ଭାଇ କାହିଁକି | ୨୫.୦୦ |
| ୧୧. | ଅଣୁରୁ ଅନ୍ତରୀକ୍ଷ | ୧୫.୦୦ |
| ୧୨. | ଜୀବନର ପିଲାଦିନ | ୨୦.୦୦ |
| ୧୩. | ଚିତ୍ରପାହାଚରେ ଚିଡ଼ିଆଖାନା | ୧୫.୦୦ |
| ୧୪. | ପରିବେଶ ଦର୍ପଣ | ୨୦.୦୦ |
| ୧୫. | ଜଳସମ୍ପଦ | ୧୫.୦୦ |
| ୧୬. | ସହଜରେ ଆଙ୍କିବା – ଗଛଲତା | ୧୫.୦୦ |
| ୧୭. | ଆକାଶରେ ଲୁଚକାଳି | ୬.୦୦ |
| ୧୮. | ଖେଳି ଖେଳି ଶିଖିବା | ୧୨.୦୦ |
| ୧୯. | କାଗଜର ଖେଳ | ୧୨.୦୦ |
| ୨୦. | ପତ୍ରରୁ ଚିତ୍ର | ୧୨.୦୦ |
| ୨୧. | ପରିବେଶ ଓ ଆତ୍ମନିର୍ଭରଶୀଳତା | ୨୦.୦୦ |

## ବିଜ୍ଞାନ ତରଙ୍ଗ

ସୃଜନିକାର ଚିନ୍ତାଧାରାକୁ ବାସ୍ତବ ରୂପ ଦେବା ବିଜ୍ଞାନ ତରଙ୍ଗର ମୂଳ ଲକ୍ଷ। ସ୍କୁଲ କଲେଜ ପିଲା ତଥା ଶିକ୍ଷକ/ଶିକ୍ଷୟିତ୍ରୀମାନଙ୍କ ପାଇଁ ଏହା ଏକ ସାଧନ ସାମଗ୍ରୀ। ଏହାର ଜଣେ ସହଯୋଗୀ ହୋଇ ଆମର ଏଇ ଅଭିଯାନରେ ସାମିଲ ହେବା ପାଇଁ ଆମର ସାଦର ନିମନ୍ତ୍ରଣ।

**ଗ୍ରାହକ ଦେୟ**

| | | |
|---|---|---|
| ସାଧାରଣ | (ବାର୍ଷିକ) | ୭୫.୦୦ |
| ଅନୁଷ୍ଠାନ | (ବାର୍ଷିକ) | ୧୦୦.୦୦ |
| ସହଯୋଗୀ | (ବାର୍ଷିକ) | ୧୦୦.୦୦ |

**ଆଜୀବନ ଏକ ହଜାର ଟଙ୍କା**

**ମୂଲ୍ୟ: ପନ୍ଦର ଟଙ୍କା**